# ଖଳା ।





ଶ୍ରୀ ଜଗନ୍ନାଥ ରଥ କାବ୍ୟତୀର୍ଥ ବିଦ୍ୟାଭୂଷଣ

# ଗୀନା ।



ଶୁଦ୍ଧିବୋଧକ, ନୂଆ ଆଦର୍ଶ ଗଳ୍ପବହି, ସତ୍ୟବୀର,
ଭକ୍ତବୀର, ଶ୍ରଦ୍ଧାବୀର, ଗଳ୍ପରହସ୍ୟ, ହାସ୍ୟତରଙ୍ଗ
ଓ ଉପନିଷଦ ଗଳ୍ପ ପ୍ରଭୃତିର
ପ୍ରଣେତା

ପୁରୀ ଜିଲ୍ଲାସ୍କୁଲର ଅବସରପ୍ରାପ୍ତ ହେଡ୍‌ପଣ୍ଡିତ
ଶ୍ରୀ ଜଗନ୍ନାଥ ରଥ କାବ୍ୟତୀର୍ଥ ବିଦ୍ୟାଭୂଷଣ ପ୍ରଣୀତ

ପଣ୍ଡିତ ଶ୍ରୀ ମଧୁସୂଦନ ବିଦ୍ୟାଲଙ୍କାରଙ୍କ ଦ୍ୱାରା
ପ୍ରକାଶିତ ।

ପ୍ରଥମ ସଂସ୍କରଣ ।



ମୂଲ୍ୟ ବାରଅଣା ମାତ୍ର ।

# ଉତ୍ସର୍ଗ ପତ୍ର

ଉତ୍କଳ-ସାହିତ୍ୟ-ସୌଭାଗ୍ୟ-ସୁଧାକର ଲୋକବରେଣ୍ୟ
କମଳାମଣ୍ଡଳେଶ୍ୱର ମାନନୀୟ ମହାରାଜା ଶ୍ରୀ ପ୍ରତାପକେଶରୀ ଦେଓ
ବିଏ, ବିଏଲ୍, ମହୋଦୟ— ମହନୀୟଚରଣେଷୁ,

ସାଦର ଆଶୀର୍ବାଦ ନିବେଦନଂ—

ବିନୟଭୂଷଣ ଶ୍ରୀମନ୍ ମହାରାଜ !

ଶ୍ରୀଯୁକ୍ତ ସ୍ୱକୀୟ ତପଃପ୍ରଭାବରୁ ଶୁଭକ୍ଷଣରେ ବିରାଟ ରାଜକୁଳରେ ଜନ୍ମଗ୍ରହଣ କରି ସୁଦ୍ଧା ଅଶୈଶବ ଭୋଗ-ବିଳାସରେ ଜଳାଞ୍ଜଳି ଦେଇ ନିଷ୍ଠାପରସାଧନାଫଳରେ ଯେଉଁ ବିଦ୍ୟାବିଭୂତି ଲାଭ କରିଅଛନ୍ତି, ତାହା ଉତ୍କଳୀୟ ରାଜନ୍ୟ ମଣ୍ଡଳୀରେ ଦୁର୍ଲ୍ଲଭ । ଏତଦ୍‌ବ୍ୟତୀତ ଶ୍ରୀଯୁକ୍ତ ଜାତୀୟ ଭାଷାର ପ୍ରସାର ଏବଂ ଜାତୀୟ ଗୌରବର ପୁନରୁଦ୍ଧାର ନିମନ୍ତେ ଯେଉଁ ତ୍ୟାଗ ଏବଂ ଉଦ୍ୟମ କରିଅଛନ୍ତି, ସେଥିପାଇଁ ଅସ୍ମେମାନେ ଦେଶବାସୀ ସକଳ ଶ୍ରୀଯୁକ୍ତଙ୍କଠାରେ ଚିରକୃତଜ୍ଞ । ସେହି କୃତଜ୍ଞତାର ନିଦର୍ଶନରୂପେ ପ୍ରତ୍ନ ସମ୍ରାଟ୍‌ର ଏହି ଐତିହାସିକ 'ଖନା' ପୁସ୍ତିକା ଖଣ୍ଡି ଶ୍ରଦ୍ଧାଭକ୍ତି ସହକାରେ ଶ୍ରୀଯୁକ୍ତଙ୍କର କରକମଳରେ ଅର୍ପଣ କରୁଅଛୁ । ତାହା ସାଦର ଗୃହୀତ ହେଲେ କୃତାର୍ଥ ହେବୁ । ଇତି ।

ତା ୧ । ୧ । ୧୯୫୧
ବୀରନରସିଂହପୁର
ପୋ: ଚନ୍ଦନପୁର, ପୁରୀ ।



ଶ୍ରୀଯୁକ୍ତଙ୍କର
ସୌଜନ୍ୟମୁଗ୍ଧ
**ପ. ଶ୍ରୋତ୍ରିୟ**

# ସୂଚନା ।

ସିଂହଳେଶ୍ୱରକନ୍ୟା କ୍ଷମା ସର୍ବତ୍ର ଖନା ନାମରେ ପରିଚିତ । ଡାକଋଷି ବଚନ ତୁଲ୍ୟ ଖନା ବଚନ ଅଦ୍ୟାପି ପ୍ରଚଳିତ । ଖନାଚରିତ କାଳ୍ପନିକ ନୁହେଁ, ଐତିହାସିକ । ଏହା ରାଜା ବିକ୍ରମାଦିତ୍ୟଙ୍କ ରାଜତ୍ୱର ଘଟଣା । ତତ୍‌କାଳୀନ ବିଶ୍ୱବିଖ୍ୟାତ ଜ୍ୟୋତିଷ ପଣ୍ଡିତ ବରାହମିହିରଙ୍କର ପୁତ୍ର ମିହିର ସହିତ ଅଦ୍ଭୁତ ଭାବରେ କ୍ଷମାର ପରିଣୟ ସମ୍ପାଦିତ ହୋଇଥିଲା । ଏହା ଅବଶ୍ୟ ସିଂହଳ ସହିତ ଭାରତର ଏକପ୍ରକାର ଯୋଗସୂତ୍ର । ଏଥିରୁ ସେ ସମୟର ରାଜସଭା, ବିଦ୍ୟାରସିକତା, ବିଶେଷତଃ ଜ୍ୟୋତିଃଶାସ୍ତ୍ରଚର୍ଚ୍ଚାର ଆଦର ଗୌରବ ଜଣାଯାଏ । ଖନା ଚରିତରେ ଉକ୍ତ ବିଷୟମାନଙ୍କର ବର୍ଣ୍ଣନାପ୍ରସଙ୍ଗରେ ମନୁଷ୍ୟର ପ୍ରମାଦ, ବିଧିବିଧାନର ବୈଚିତ୍ର୍ୟ, ପ୍ରେମର ମାହାତ୍ମ୍ୟ, ଜ୍ୟୋତିଷଶାସ୍ତ୍ରର ଚମତ୍କାରିତା, ବାତ୍ସଲ୍ୟର ପ୍ରଭାବ ଏବଂ ଗୁରୁଭକ୍ତିର ପରାକାଷ୍ଠା ବିଶଦ ଭାବରେ ପରିସ୍ଫୁଟ । ମୂଳତଃ ଚରିତଟି ଯେପରି କୌତୂହଳପୂର୍ଣ୍ଣ, ସେହିପରି ଶିକ୍ଷାପ୍ରଦ ।

ସୁତରାଂ ଏତଦ୍ଦ୍ୱାରା ଲୋକଶିକ୍ଷା କେତେକାଂଶରେ ସାଧିତ ହୋଇପାରିବ ବୋଲି ବିଶ୍ୱାସ ହୁଏ । ତାହା ହୋଇପାରିଲେ ଯେ ଲେଖିକାର ଶ୍ରମ ସାର୍ଥକ ହେବ, ଏହା କହିବା ବାହୁଲ୍ୟ ମାତ୍ର । ଇତି ।

ବିନୀତ

ଲେଖିକା—

# ଶୁଦ୍ଧିପତ୍ର ।

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୪ | ୧୭ | ଅବଗ୍ୟଂ | ଅବଶ୍ୟଂ |
| ୧୦ | ୧୯ | ଈରଶ୍ୱଙ୍କର | ଈଶ୍ୱରଙ୍କର |
| ୧୨ | ୧୨ | ଅ ର୍ଣ୍ଣ | ଅଦ୍ଭୁର୍ଣ୍ଣ |
| ୧୭ | ୧୧ | ଷମତ୍ତୁଲ୍ୟ | ଷମାତ୍ତୁଲ୍ୟଂ |
| ୨୦ | ୩ | ଛଣିପାର | ଛାଣିପାର |
| ୨୫ | ୧୨ | ଅଦଶନ | ଅଦର୍ଶନ |
| ୨୨ | ୧୦ | ସ୍ତବ | ସ୍ତବ୍ |
| ୩୨ | ୪ | ଗଣିତ | ଗାଣିତ |
| ୩୨ | ୭ | ଅମୃଫମ୍ବରଣ | ଅମୃତମ୍ବରଣ |
| ୩୨ | ୧୮ | ମହାତ୍ମ୍ୟ | ମାହାତ୍ମ୍ୟ |
| ୩୬ | ୧୮ | ସେବାକ୍ଷମ | ସେବାକ୍ଷମା |
| ୩୭ | ୧୮ | ଶିଷ୍ୟାଗ୍ରୁ | ଶିଷ୍ୟଂଗୁରୁ |
| ୩୭ | ୫ | ଦେହେଁଥାଏ | ଦେହେଥାଉ |
| ୩୯ | ୨୩ | ଗଲ | ହୋଇଗଲା |
| ୪୦ | ୧୪ | ଉକ୍ରନ୍ଧୀ | ଉତ୍କଣ୍ଠା |
| ୪୦ | ୨୧ | ସୁବର୍ଦ୍ଧକ | ସୁବାର୍ଦ୍ଧକ |
| ୪୩ | ୭ | ଯବା | ଯାବୀ |
| ୫୨ | ୨୧ | ମହୂର | ମିହୂର |
| ୫୯ | ୧୨ | ବୋଷ୍ଟୁଯାତ୍ର | ବୋଷ୍ଟୀଯାର୍ଥ |



# ପ୍ରଥମ ପରିଚ୍ଛେଦ ।।

ପୃଥିବୀର ଯାବତୀୟ ଦେଶମଧ୍ୟରେ ଭାରତବର୍ଷହିଁ ବିଶ୍ୱସ୍ରଷ୍ଟାଙ୍କର ଅପୂର୍ବ ସୃଷ୍ଟି । ଏହା ଯେପରି ସୁଉତ୍ତୁଙ୍ଗ ପର୍ବତ, ସୁଗଭୀର ସମୁଦ୍ର, ସୁପ୍ରଶସ୍ତ ନଦନଦୀ, ସୁବିସ୍ତୃତ ଅରଣ୍ୟମାନଙ୍କ ଯୋଗେ କମନୀୟ ଏବଂ ଉପାଦେୟ, ପୃଥିବୀର ଅନ୍ୟ କୌଣସି ଦେଶ ତଦ୍ରୂପ ନୁହେ । ଏହିଠାରେହିଁ ଛଅଗୋଟି ଋତୁର ଧାରାବାହିକ ପ୍ରବର୍ତ୍ତନ । ସୁତରାଂ ଭାରତବର୍ଷ ପ୍ରକୃତିର ପୂର୍ଣ୍ଣ ବିକାଶର ସ୍ଥଳ । ଏହି ପ୍ରାକୃତିକ କାରଣରୁ ପୃଥିବୀର ଯେ କୌଣସି ପ୍ରାଣୀ ଏବଂ ଯେ କୌଣସି ଉଦ୍ଭିଦପକ୍ଷରେ କେବଳ ଭାରତ ପ୍ରାଣପରିପୋଷକ ଅଟେ । ଏ ସୌଭାଗ୍ୟ ଭାରତ-ବ୍ୟତିରେକେ ଅନ୍ୟତ୍ର ଦୃଷ୍ଟିଗୋଚର ହୁଏ ନାହିଁ । ସୁତରାଂ ଭାରତ ଦେବଭୂମି, ସ୍ୱର୍ଣ୍ଣପ୍ରସୂ, ଏହି ଆଖ୍ୟା ଚିରକାଳ ଲାଭ କରି ଆସିଅଛି ।

ଭାରତର ବାହ୍ୟ ପ୍ରକୃତି ଯେପରି ଚିତ୍ତାକର୍ଷକ, ଅନ୍ତଃପ୍ରକୃତି ମଧ୍ୟ ସେହିପରି ଚମତ୍କାର ! ଭାରତରେ ଏପରି ପ୍ରଦେଶ ନାହିଁ, ଯେଉଁଠାରେ କି ବହୁ ଅଲୌକିକ ବିଭୂତିମୟ ଘଟଣାର ସଂଘଟନ ନ ହୋଇଅଛି । ସେଥିଯୋଗୁଁ ଭାରତର ପୁରାଣ, ଇତିହାସ, ସାହିତ୍ୟ ପ୍ରଭୃତି ସହସ୍ର ସହସ୍ର ଘଟଣାରତ୍ନରେ ମଞ୍ଜୁଳ ଏବଂ ମନୋହର ।

ଭାରତର ଅନ୍ତର୍ଗତ ଇତିହାସପ୍ରଥିତ ଉଜ୍ଜୟିନୀ ନଗରୀ ପୂର୍ବେ ବିଦ୍ୟାଚର୍ଚ୍ଚା ନିମନ୍ତେ ସମଧିକ ଖ୍ୟାତି ଲାଭ କରିଥିଲା । ସେହି ଉଜ୍ଜୟିନୀ ସ୍ୱନାମଖ୍ୟାତରାଜା ବିକ୍ରମାଦିତ୍ୟଙ୍କର ରାଜଧାନୀ ଥିଲା । ବିକ୍ରମାଦିତ୍ୟଙ୍କର ବିଦ୍ୟାନୁରାଗିତା ଲୋକବିଶ୍ରୁତ ଅଟେ । ତାହାଙ୍କର

ରାଜସଭା ବହୁ କବି ଏବଂ ପଣ୍ଡିତଙ୍କଦ୍ୱାରା ସମଲଂକୃତ ହୋଇଥିଲା । ସେଥିମଧ୍ୟରୁ ବିଭିନ୍ନ ବିଦ୍ୟାରେ ବିଶିଷ୍ଟ ନଅଜଣ ପଣ୍ଡିତ ନବରତ୍ନ-ନାମରେ ଅଦ୍ୟାପି ପରିଚିତ ଅଟନ୍ତି । ଧନ୍ୱନ୍ତରି, କ୍ଷପଣକ, ଅମରସିଂହ, ଶଙ୍କୁ, ବେତାଳଭଟ୍ଟ, ଘଟକର୍ପର, କାଳିଦାସ, ବରାହମିହିର ଏବଂ ବରରୁଚି, ଏହି ନଅଜଣ ନବରତ୍ନନାମରେ ବିଖ୍ୟାତ । ପ୍ରୋକ୍ତ ନବରତ୍ନମାନଙ୍କ ମଧ୍ୟରୁ ବରାହମିହିର ଜ୍ୟୋତିଃଶାସ୍ତ୍ରରେ ଅଦ୍ୱିତୀୟ ପଣ୍ଡିତ ଥିଲେ । ସେ ଜ୍ୟୋତିର୍ଗଣନାବଳରେ ଭୂତ, ଭବିଷ୍ୟତ୍ ଏବଂ ବର୍ତ୍ତମାନ, ତିନିକାଳର ଘଟନା ଅଭ୍ରାନ୍ତଭାବରେ ଉପସ୍ଥାପିତ କରି-ପାରୁଥିଲେ । ତାହାଙ୍କ ପ୍ରଣୀତ ପଞ୍ଚସିଦ୍ଧାନ୍ତିକା, ବୃହଜ୍ଜାତକ ଏବଂ ବୃହତ୍ ସଂହିତା ଅଦ୍ୟାପି ଜ୍ୟୋତିଷୀମାନଙ୍କର ଜ୍ୟୋତିର୍ବିଦ୍ୟା—ଲାଭରେ ପରମ ସହାୟ ହୋଇଅଛି । ଏହି ଅସାଧାରଣ ବିଦ୍ୟାସାମର୍ଥ୍ୟ-ଯୋଗୁଁ ବରାହମିହିର ତଦ୍‌ବଧି ଲୋକସମାଜର ନମସ୍ୟ ଅଟନ୍ତି ।

ବରାହମିହିର ବହୁକାଳପର୍ଯ୍ୟନ୍ତ ନିଃସନ୍ତାନ ଥିଲେ । ଶାସ୍ତ୍ରୋକ୍ତି ଅଛି— "ପୁତ୍ରପ୍ରୟୋଜନା ଭାର୍ଯ୍ୟା ।" ପ୍ରକୃତରେ ଗାର୍ହସ୍ଥ୍ୟ କରି ଯଦି ପୁତ୍ରଲାଭ ନହେଲା, ତେବେ ସେ ଗାର୍ହସ୍ଥ୍ୟ ନିଷ୍ଫଳ ପଣ୍ଡ । ନିଃସନ୍ତାନତା ଜନିତ ଦୁଃଖର ପ୍ରଭାବ ନିଃସନ୍ତାନହିଁ ଜାଣେ । ଅତୁଳ ରାଜୈଶ୍ୱର୍ଯ୍ୟ ସୁଦ୍ଧା ନିଃସନ୍ତାନର ମନରେ ତିଳମାତ୍ର ଶାନ୍ତି ଦେଇପାରେ ନାହିଁ । ସୁତରାଂ ସନ୍ତାନକାମନାରେ ପିତାମାତା ଯେ କୌଣସି ପ୍ରକାର ତ୍ୟାଗ, ଯେକୌଣସି ପ୍ରକାର ବ୍ରତୋପବାସ ଏବଂ ଯେକୌଣସି ପ୍ରକାର ତପସ୍ୟା କରିବାରେ ଆଦୌ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ବରାହ ରାଜଦତ୍ତ ପାରିତୋଷିକ ଏବଂ ରାଜଦତ୍ତ ସମ୍ମାନରେ ଅହରହଃ ସମ୍ମାନିତ ହେଉଥିଲେହେଁ ଅପୁତ୍ରକତା ହେତୁରୁ ଘୋର ଅଶାନ୍ତି ଭୋଗ କରୁଥିଲେ । ସୁତରାଂ ସେ ଏକାଗ୍ର ଚିତ୍ତରେ ପୁତ୍ରକାମନାରେ

କୌଶିକି ଉପାସନା ଆରମ୍ଭ କଲେ । ସୁନାର ବର୍ଷସ୍ସ— ବହୁକାଳର ଉପାସନା ଫଳରେ ବଭୁକୃପାରୁ ଗୋଟିଏ ପୁତ୍ର ସନ୍ତାନ ଲାଭହେଲା । ଶିଶୁଟି ପଣ୍ଡିତର ପୁତ୍ର, ସେ ପୁଣି ଉପାସନାପ୍ରସୂତ, ସୁତରାଂ ତାହାଠାରେ ସୌନ୍ଦର୍ଯ୍ୟ ଏବଂ ପ୍ରତିଭା ଫୁଟି ଉଠୁଥିଲା । ବହୁକାଳ-ବାଞ୍ଛିତ ଏବଂ ଉପାସନାଫଳସଂଭୂତ ଶୁଭଲକ୍ଷଣଯୁକ୍ତ ପୁତ୍ରରତ୍ନ ଲାଭକରି ବସିଷ୍ଠ ଆନନ୍ଦରେ ଅଭିଭୂତ ହେଲେ ।

ସଂସାର ବିଚିତ୍ର, ଏଥିରେ କିଛିହିଁ ସ୍ଥିର ନୁହେ । ଆନନ୍ଦ ହେଉ ବା ବିଷାଦ ହେଉ, ଦୁଃଖ ହେଉ ବା ସୁଖ ହେଉ, କିଛି ଅଖଣ୍ଡ ବା ଅବିମିଶ୍ରିତ ନୁହେ । ଆନନ୍ଦ ସଙ୍ଗେ ସଙ୍ଗେ ବିଷାଦ ଏବଂ ସୁଖ ସଙ୍ଗେ ସଙ୍ଗେ ଦୁଃଖ ନିରନ୍ତର ସଂଯୁକ୍ତ, ଏହା ପ୍ରକୃତିର ନିୟମ । ବସିଷ୍ଠ ପୁତ୍ରଲାଭରେ ଅପୂର୍ବ ଆନନ୍ଦ ଲାଭକଲେ ସତ୍ୟ, ମାତ୍ର ତାହା ବହୁକାଳ ଅକ୍ଷୁଣ୍ଣ ରହି ପାରିଲା ନାହିଁ । ନବଜାତ ଶିଶୁର ମାତା ବସିଷ୍ଠଙ୍କର ପତ୍ନୀ ପୁତ୍ରପ୍ରସବର ଅଳ୍ପଦିନପରେ ଇହଧାମରୁ ବିଦାୟ ଗ୍ରହଣ କଲେ । ପୁଣି ଶିଶୁର ଲାଳନପାଳନ ନିମନ୍ତେ ବସିଷ୍ଠଙ୍କ ପରିବାରରେ ତାଙ୍କ ବ୍ୟତୀତ ଅନ୍ୟ କେହି ଆତ୍ମୀୟ ସ୍ୱଜନ ନଥିଲେ । ସୁତରାଂ ଶିଶୁର ସମଗ୍ରଭାର ବସିଷ୍ଠ ବହନ କରିବାକୁ ବାଧ୍ୟ ହେଲେ ।

ଶିଶୁପାଳନ ସ୍ତ୍ରୀଜାତି ପକ୍ଷରେ ବିଶେଷତଃ ଜନନୀପକ୍ଷରେ ଯେପରି ସ୍ୱାଭାବିକ, ପିତୃପକ୍ଷରେ ତାହା କଦାପି ସେପରି ନୁହେ । ପତ୍ନୀବିୟୋଗଦୁଃଖ, ସେଥିରେ ପୁଣି ବୃଦ୍ଧ ବୟସରେ ସନ୍ତାନପାଳନରୂପ ଦୁର୍ବହ ଭାର । ତେଣୁ ବସିଷ୍ଠ ଦିବାରାତ୍ର ଅଶାନ୍ତିରେ ଜୀବନଯାପନ କଲେ ।

ବସିଷ୍ଠ ଅତ୍ୟନ୍ତ ଜ୍ଞାନୀ । ସଂସାରରେ କେଉଁ କାର୍ଯ୍ୟର ପରିଣାମ କିପରି, ତାହା ସେ ଜ୍ଞାନବଳରେ ଅବଧାରଣ କରିପାରୁଥିଲେ । ତଥାପି

ଦୈବାତ୍ ସନ୍ତାନ ପାଳନର ପରିଣାମଚିନ୍ତା ତାହାଙ୍କ ମନକୁ ଆନ୍ଦୋଳିତ କଲା । ସେ ଭାବିଲେ— ନିଜର ସକଳପ୍ରକାର ସୁଖଶାନ୍ତିରେ ଜଳାଞ୍ଜଳି ଦେଇ ଏ ଶିଶୁକୁ ପାଳନ କରିବି, ପାଳନ ସମ୍ପର୍କରେ ଏହାପ୍ରତି ମଧ୍ୟ ସ୍ନେହମମତା ଯଥେଷ୍ଟ ବୃଦ୍ଧି ଲାଭ କରିବ । ଏପରି ସାଧନା, ଏପରି ସମ୍ପର୍କର ଫଳରେ ଯଦି ଦୈବାତ୍ ଶିଶୁର ଅମଙ୍ଗଳ ଘଟେ, ତେବେ ସେତେବେଳେ ମୋହର କି ଭୟାବହ ଅବସ୍ଥା ସଂଘଟିତ ନହେବ ? ସୁତରାଂ ବର୍ତ୍ତମାନହିଁ କୋଷ୍ଠୀପାତ କରି ଆୟୁର୍ଗଣନା କରିବା ଉଚିତ । ତାହାହେଲେ କର୍ତ୍ତବ୍ୟାବଧାରଣରେ ସୁବିଧା ମିଳି ପାରିବ । ବିପ୍ରହ ଏହି ସିଦ୍ଧାନ୍ତରେ ଉପନୀତ ହୋଇ ଶିଶୁ କନ୍ୟାର ଆୟୁର୍ଗଣନା କଲେ ।

ବିଧାତାର ବିଧାନ ଅନ୍ୟଥା କରିବା ମାନବ ପକ୍ଷରେ ଅସମ୍ଭବ । ମାନବ ଯେବେ ସ୍ୱେଚ୍ଛାବଶ୍ୟ ଦୁଃଖ ବା ବିପଦରୁ ଆତ୍ମରକ୍ଷା କରିବା ନିମନ୍ତେ ସର୍ବଥା ସମର୍ଥ ହୋଇ ପାରୁଥାନ୍ତା, ତେବେ ଭଗବତ୍ ସୃଷ୍ଟିରେ ଦୁଃଖ ବା ବିପଦର ଅବକାଶ ନଥାନ୍ତା ଏବଂ ମାନବୀୟ ଶକ୍ତିଠାରୁ ଐଶୀ ଶକ୍ତିର ମଧ୍ୟ ବିଶେଷତ୍ୱ ନଥାନ୍ତା । କିନ୍ତୁ ଏକଥା ସ୍ୱତଃସିଦ୍ଧ—'ଅବଶ୍ୟଂ ଭାବିନୋ ଭାବା ଭବନ୍ତି ମହତା ମପି ।' ଫଳତଃ ବିଧିସୃଷ୍ଟିର ଅନ୍ୟଥାକରଣ ଅସମ୍ଭବ । ବିପ୍ରହ ଗଣନା ଆରମ୍ଭ କଲେ ସତ୍ୟ, କିନ୍ତୁ ମନୁଷ୍ୟ ଦୃଷ୍ଟିରେ ଯେତିକି ଦେଖା ଯିବାର କଥା, ସେତିକି ଦେଖିବେ ସିନା ? ସେ ତଦନୁସାରେ ଗଣନା କରି ଗଣନାଫଳରୁ ବୁଝିଲେ—ଶିଶୁର ପରମାୟୁ ଦଶବର୍ଷ ମାତ୍ର । କିନ୍ତୁ ଗଣନାରେ ଯେଉଁ ବିପ୍ରହଙ୍କର ପ୍ରମାଦ ଅଛି, ତାହା ତାହାଙ୍କ ଅଗୋଚର । ସେ ଯାହାହେଉ, ଗଣନା ଫଳରୁ ବିପ୍ରହଙ୍କର ପରିଣାମ ବୁଝିବାରେ କିଛି ବାକି ରହିଲା ନାହିଁ । ସୁତରାଂ ସେ ବୁଝିଲେ—

ତମାଙ୍କର ଏହି ଶିଶୁ ପୁତ୍ର ପ୍ରତି ଏହି ଅଳ୍ପଦିନରେ ଯେଉଁ ପରିଶ୍ରମ ଏବଂ ମମତା ହୋଇଅଛି, ଦଶବର୍ଷରେ ତାହା ନିଶ୍ଚୟ ବହୁଗୁଣିତ ହେବ । ତେତେବେଳେ ଏ ମମତାଗ୍ରସ୍ତ ହୃଦୟରେ ଅକାଳ ପୁତ୍ରବିଚ୍ଛେଦ ଯେଉଁ ଦୁର୍ବିସହ ଯାତନା ଦେବ, ତାହା ସହିବା ତମ ପକ୍ଷରେ ଅସମ୍ଭବ ହେବ । ପୁଣି ଜାଣି ଶୁଣି ଏପରି ଦୁର୍ବିପାକକୁ ଅପେକ୍ଷା କରିବା କୌଣସି ବିଜ୍ଞ ଲୋକର କର୍ତ୍ତବ୍ୟ ନୁହେ । ସୁତରାଂ ଏହି ଶୈଶବରୁ ଏ ଶିଶୁର ବର୍ଜ୍ଜନ ସର୍ବଥା ଶ୍ରେୟସ୍କର ।

ବରାହ ପୁତ୍ରତ୍ୟାଗର ସିଦ୍ଧାନ୍ତରେ ଉପନୀତ ହୋଇ ଗୋଟିଏ ତାମ୍ରକୁଣ୍ଡ ନିର୍ମାଣ କରାଇଲେ । ଦିନେ ସମସ୍ତଙ୍କ ଅଗୋଚରରେ ଶିଶୁଟିକୁ ସେହି ତାମ୍ରକୁଣ୍ଡରେ ଶୁଆଇ ନିଜେ ନେଇ ଗୃହର ଅଦୂରରେ ପ୍ରବାହିତ ସିପ୍ରାନଦୀର ସ୍ରୋତରେ ଭସାଇ ଦେଲେ । ଏବଂବିଧ କାର୍ଯ୍ୟ କରି ବରାହ ଯେ ଶାନ୍ତିଲାଭ କଲେ, ଏହା କଦାପି ନୁହେ । ବରଂ ଦଶବର୍ଷ ପରେ ଯେଉଁ ଦୁଃଖ ଅନୁଭବ କରିଥାନ୍ତେ, ମାନୁଷୀ ବୁଦ୍ଧିରୁ ଦଶବର୍ଷ ପୂର୍ବରୁ ସେହି ଦୁଃଖ ଅନୁଭବ କଲେ । ପିତାପୁତ୍ରସମ୍ବନ୍ଧ ଜଗତରେ ଅଦ୍ୱିତୀୟ । ଶ୍ରୁତିରେ କଥିତ ଅଛି— "ଆତ୍ମାବୈ ପୁତ୍ର ନାମାସି ।" ଅର୍ଥାତ୍ ପିତାର ଆତ୍ମା ଅଂଶତଃ ପୁତ୍ରରୂପରେ ଜନ୍ମଗ୍ରହଣ କରେ । ତାହାର ଦୁଃଖ ହେଲେ, ତାହାର ବିପଦ ହେଲେ, ତାହାର ବିଚ୍ଛେଦ ହେଲେ, କେଉଁ ପିତା ମର୍ମବ୍ୟଥା ଅନୁଭବ ନ କରେ ? ବରାହ ମିହିରଙ୍କ ପକ୍ଷରେ ଏହା ମୃତ୍ୟୁର ଦୁଃଖ ନୁହେ, ବିପଦ ନୁହେ, ବିଚ୍ଛେଦ ନୁହେ, ଏହା ଚିରବିୟୋଗ । ସୁତରାଂ ତାଙ୍କର ହୃଦୟ ଅହରହଃ କିପରି ମଥିତ ହୋଇଥିବ, ତାହା ସମଦଶା-କ୍ରାନ୍ତ ଯେ କୌଣସି ପିତାଙ୍କୁହିଁ ଗୋଚର ।



# ଦ୍ୱିତୀୟ ପରିଚ୍ଛେଦ ।

ବିଶ୍ୱବ୍ରହ୍ମାଣ୍ଡର ଏକମାତ୍ର ପିତା ପରମେଶ୍ୱର । ଅନନ୍ତକୋଟି ପ୍ରାଣୀ ତାହାଙ୍କ ଦୟାରେ ସୃଷ୍ଟ ଏବଂ ସ୍ନେହରେ ପାଳିତ । "ସ ରକ୍ଷିତା ରକ୍ଷତି ଯୋହି ଗର୍ଭେ ।" ଅର୍ଥାତ୍ ପରମପିତା ପରମେଶ୍ୱର ମାତୃଗର୍ଭରେ ଭ୍ରୂଣର ପୋଷଣୋପଯୋଗୀ ଆହାରର ବ୍ୟବସ୍ଥା କରି ତାହାକୁ ରକ୍ଷା କରନ୍ତି । ସେହି ପୁଣି ଶିଶୁନିମନ୍ତେ ମାତୃସ୍ତନରେ ସ୍ତନ୍ୟ ଏବଂ ମାନବ ନିମନ୍ତେ ଅଜସ୍ର ଫଳମୂଳ ସୃଷ୍ଟି କରି ଅଛନ୍ତି । କାର୍ଯ୍ୟତଃ ସନ୍ତାନ-ପକ୍ଷରେ ମାନବ ପିତୃମାତୃଭାବରେ ନିମିତ୍ତ ମାତ୍ର । ନଚେତ୍ ସେହି ପରମପିତା ପିତୃଭାବରେ ତଥା ମାତୃଭାବରେ ଅନୁକ୍ଷଣ ଏ ଜୀବସୃଷ୍ଟିକୁ ବଞ୍ଚାଇ ରଖିଅଛନ୍ତି ।

ବସୁହଙ୍କର ଶିଶୁପୁତ୍ର ସିପ୍ରାସ୍ରୋତରେ ଭାସମାନ ହେଲା । ଲୋକଦୃଷ୍ଟିରେ ପିତୃପରିତ୍ୟକ୍ତ ମାତୃଶୂନ୍ୟ ଶିଶୁ ଅକୂଳ ଜଳରାଶିରେ ଅନାଥଭାବରେ ଭାସିଲା ସତ୍ୟ, କିନ୍ତୁ ସେ ପରମପିତାଙ୍କର ସ୍ନେହ-ଦୃଷ୍ଟିରୁ ବଞ୍ଚିତ ନୁହେ । ସେ ଯେପରି ମାନବପିତାମାତାଙ୍କ କୋଳରୁ ଅନ୍ତରିତ ହୋଇ ନଦୀମାତୃକୋଳରେ ସୁଖରେ ଶୟାନ । ତାହାରି ନିମନ୍ତେ ସତେ ଯେପରି ପ୍ରଭୁଙ୍କ ଆଦେଶରେ ଆକାଶ ନିର୍ମଳ, ମୃଦୁ-ମଳୟାନିଳ ପ୍ରବାହିତ ଏବଂ ନଦୀସ୍ରୋତ ମନ୍ଥର ହୋଇଗଲା । କଥାରେ ଅଛି—"ରଖେ ହରି ମାରେ କୋନ୍ ।" ପ୍ରକୃତରେ ଯାହାର ପ୍ରଭୁ ସହାୟ, ତାହାର ଅମଙ୍ଗଳ ଅବା କାହୁଁ ହେବ ? ପ୍ରକୃତିମାତାଙ୍କର ଅନୁଗ୍ରହରୁ ଶିଶୁଟି ଦୋଳାୟିତ ହେଲାପରି ସେହି ତାମ୍ରନୌକାରେ ଧୀରେ ଧୀରେ ଭାସି ଭାସି ଯାଇ ସମୁଦ୍ରରେ ଉପନୀତ ହେଲା ।

ସମୁଦ୍ର ମଧ୍ୟ ଶିଶୁର ସୌଭାଗ୍ୟରୁ ତେତେବେଳେ ନିଜର ରୁଦ୍ରଭୀଷଣ-ଉତ୍ତୁଙ୍ଗତରଙ୍ଗ—ତାଣ୍ଡବ ବନ୍ଦ ହୋଇ ମଧୁରମୂର୍ତ୍ତି ଧାରଣପୂର୍ବକ ଅସହାୟ ଶିଶୁକୁ କୋଳରେ ଆଶ୍ରୟ ଦେଇ ଧନ୍ୟ ହେଲା । ଶିଶୁ ମୃଦୁହିଲ୍ଲୋଳରେ ଭାସମାନ ହୋଇ ବିଧିବିଧାନରେ ସିଂହଳର ଉପକୂଳ ନିକଟରେ ଉପସ୍ଥିତ ହେଲା ।

ସିଂହଳର ଉପକୂଳ ଅରଣ୍ୟମୟ ଏବଂ ହିଂସ୍ରଜନ୍ତୁସମାକୁଳ । ତତ୍ରତ୍ୟ ଅରଣ୍ୟ ମଧ୍ୟ ବହୁ ଅସଭ୍ୟ ଲୋକଙ୍କଦ୍ୱାରା ଅଧ୍ୟୁଷିତ । ଅରଣ୍ୟବାସୀ ଅସଭ୍ୟମାନେ ବନ୍ୟ ଫଳମୂଳ ଏବଂ ପଶୁପକ୍ଷୀମାନଙ୍କର ମାଂସ ଭକ୍ଷଣ କରି ଜୀବନ ଧାରଣ କରନ୍ତି । ତତ୍ରତ୍ୟ କତିପୟ ବନବାସୀ ସ୍ତ୍ରୀପୁରୁଷ ସେହି ଉପକୂଳରେ ଖାଦ୍ୟ ଅନ୍ୱେଷଣରେ ବ୍ୟାପୃତ ଥିଲେ । ଦୈବାତ୍ ସେମାନଙ୍କ ମଧ୍ୟରୁ କାହାରି କାହାରି ସେହି ଭାସମାନ ତାମ୍ରକୁଣ୍ଡପ୍ରତି ଦୃଷ୍ଟିପାତ ହେଲା । ତଦ୍ଦର୍ଶନରେ ସେମାନେ କୌତୂହଳାକ୍ରାନ୍ତ ହୋଇ ପ୍ରକୃତ ତଥ୍ୟ ଜାଣିବା ନିମନ୍ତେ ଉତ୍ସୁକ ହେଲେ । ସୁତରାଂ ସେମାନଙ୍କ ମଧ୍ୟରୁ ଜଣେ ଦୁଇଜଣ ସନ୍ତରଣପୂର୍ବକ ପ୍ରୋକ୍ତ ତାମ୍ରନୌକା ନିକଟକୁ ଯାଇ ଶିଶୁସହିତ ସେହି ତାମ୍ରନୌକାକୁ କୂଳକୁ ଘେନି ଆସିଲେ । ସେହି ଅପୂର୍ବ ରୂପଲାବଣ୍ୟ ସମ୍ପନ୍ନ ସୁକୁମାର ଶିଶୁକୁ ସନ୍ଦର୍ଶନ କରିବା ମାନସରେ ଉପକୂଳସ୍ଥ ବନବାସୀ ସ୍ତ୍ରୀପୁରୁଷ ସକଳ ଲୁଣ୍ଠୀଭୂତ ହେଲେ ।

ବିଧାତୃସୃଷ୍ଟିରେ ପୁରୁଷ ରୁକ୍ଷ ଏବଂ କର୍କଶ; କିନ୍ତୁ ସ୍ତ୍ରୀ କୋମଳ ଏବଂ ମଧୁର । ପୁଣି ପୁରୁଷ ଅପେକ୍ଷା ସ୍ତ୍ରୀଜାତିର ଦୟା ପ୍ରବଳ । ବନବାସୀ ପୁରୁଷମାନେ ଶଂସିତ ସୁକୁମାର ଶିଶୁକୁ ସନ୍ଦର୍ଶନ କରିବା ମାତ୍ରକେ ତାହାର ସୁକୋମଳ ମାଂସ ଭକ୍ଷଣ କରିବାକୁ ଅଭିଳାଷୀ

ଓହ୍ଲାଇ ପଡ଼ିଲେ । କିନ୍ତୁ ସ୍ତ୍ରୀମାନେ ଶିଶୁର ଦର୍ଶନମାତ୍ରକେ ବାତ୍ସଲ୍ୟରେ ଦ୍ରବୀଭୂତ ହୋଇ ସଙ୍ଗେ ସଙ୍ଗେ ସ୍ତନ୍ୟ ଦାନକରି ତାହାର ରକ୍ଷଣାବେକ୍ଷଣ ନିମନ୍ତେ ତତ୍ପର ହେଲେ ।

ନିଜର ହେଉ, ପରର ହେଉ, ଶିଶୁମାନେ ସ୍ତ୍ରୀ ଜାତିର ଆଦରର ଧନ । ଏଥିପାଇଁ ଜଗତରେ ମାତୃଜାତିର ସମ୍ମାନ ପୂଜା ଦିନା ? ସେହି ସୁନ୍ଦର ସୁକୁମାର ଶିଶୁଟି କିପରି ସୁଖରେ ରହିବ, ଏଥିଲାଗି ସେମାନେ ନାନା ଉପାୟ ଚିନ୍ତା କରିବାକୁ ଲାଗିଲେ । କାର୍ଯ୍ୟତଃ ପୁରୁଷମାନଙ୍କର ସୃଷ୍ଟି କଳ୍ପନା ପରିବର୍ତ୍ତିରେ ନାରୀମାନଙ୍କର ରକ୍ଷାକଳ୍ପନାର ଆନୁକୂଲ୍ୟରେ ସମସ୍ତେ ଚିନ୍ତିତ ହେଲେ ।

ସେହି ସମୟରେ ସିଂହଳଦେଶରେ ଶଶିଶେଖରନାମରେ ଜଣେ ଧାର୍ମିକ ରାଜା ରାଜତ୍ୱ କରୁଥିଲେ । ସେ ରାଜା ଯେପରି ବିଦ୍ୱାନ୍, ସେହିପରି ପ୍ରଜାବତ୍ସଳ ମଧ୍ୟ ଥିଲେ । କିନ୍ତୁ ପରିତାପର ବିଷୟ ଏହିଯେ ସେ ନିଃସନ୍ତାନ ଥିଲେ । ଧର୍ମଶୀଳ ରାଜାଙ୍କର ଏହି ଅନପତ୍ୟତା ରାଜ୍ୟର ପ୍ରଜାବର୍ଗଙ୍କୁ ଅତ୍ୟନ୍ତ ବାଧୁଥିଲା । ସେହି ଅସଭ୍ୟ ବନବାସୀମାନେ ମଧ୍ୟ ଉକ୍ତ ଅଭାବ ଅନୁଭବ କରୁଥିଲେ ।

ମନୁଷ୍ୟ ଚିରକାଳ ବର୍ତ୍ତମାନର ଅଧିକାରୀ । ଭବିଷ୍ୟତ ଉପରେ ତାହାର କୌଣସି ଅଧିକାର ନାହିଁ । ଭବିଷ୍ୟତର ଏକମାତ୍ର ନିୟନ୍ତା ବିଶ୍ୱସ୍ରଷ୍ଟା ପରମେଶ୍ୱର । ସେ ଆମ୍ଭମାନଙ୍କର ଅଗୋଚରରେ ଭବିଷ୍ୟତ ରଚନା କରି ରଖିଥାନ୍ତି । ବର୍ତ୍ତମାନର କେଉଁ ଅଙ୍ଗ, କେଉଁ ପ୍ରଭାବ ଭବିଷ୍ୟତରେ କି ଆକାର ଧାରଣ କରିବ, ତାହା ମାନବ କଳ୍ପନାର ବହିର୍ଭୂତ ।

# ଶନା

ଶିଶୁଟି ଅରଣ୍ୟବାସୀମାନଙ୍କର ହସ୍ତଗତ କାହିଁକି ହେଲା, ରାଜାଙ୍କର ଅପୁତ୍ରକତା ବା ସେମାନଙ୍କୁ କାହିଁକି ବାଧିଲା, ଏହା ବର୍ତ୍ତମାନ ଅଲକ୍ଷ୍ୟ । ସେ ଯାହାହେଉ, ସେମାନେ ଶିଶୁଟିକୁ ରାଜପୁତ୍ର-ତୁଲ୍ୟ ସୁନ୍ଦର ଏବଂ ସୁକୁମାର ସୁଦର୍ଶନବନ୍ତ ଓ ରାଜଯୋଗ୍ୟ ଭାବି ସିଂହଳେଶ୍ୱରଙ୍କର ଅପୁତ୍ରକତା ଦୂରକରିବା ଉଦ୍ଦେଶ୍ୟରେ ଏବଂ ଶିଶୁର ଜୀବନ ସୁଖମୟ କରିବା ଆଶାରେ ତାହାକୁ ରାଜାଙ୍କୁ ଉପହାରରୂପେ ଦେବାକୁ ସ୍ଥିର କଲେ । ଏଥିରେ କାହାରି ମତାନ୍ତର ନହେବାରୁ ସେମାନେ ସମସ୍ତେ ଶିଶୁସହ ରାଜାଙ୍କ ନିକଟକୁ ଯାତ୍ରାକଲେ ।



# ତୃତୀୟ ପରିଚ୍ଛେଦ ।

ଯୁଗେ ଯୁଗେ ରାଜାପ୍ରଜାସମ୍ପର୍କ ପିତାପୁତ୍ରସମ୍ପର୍କତୁଲ୍ୟ ପବିତ୍ର। ପ୍ରଜା ନିଜର ମନୋଭାବଜ୍ଞାପନ କରିବା ନିମନ୍ତେ ଯେପରି ରାଜଦର୍ଶନ ଆବଶ୍ୟକ କରେ, ରାଜା ମଧ୍ୟ ସେହିପରି ପ୍ରଜାମନୋଭାବ ବୁଝିବା ନିମନ୍ତେ ଦର୍ଶନ ଦେବାରେ ଆଦୌ କୁଣ୍ଠା ପ୍ରକାଶ କରନ୍ତି ନାହିଁ । ଯେଉଁ ରାଜ୍ୟରେ ଏହିପରି ରୀତିର ପ୍ରଚଳନ ଥାଏ, ସେ ରାଜ୍ୟର ପ୍ରଜା କଦାପି ପ୍ରତାରିତ କିମ୍ବା ପ୍ରପୀଡ଼ିତ ହୁଅନ୍ତି ନାହିଁ ଏବଂ ରାଜା ମଧ୍ୟ ନିଜର କର୍ତ୍ତବ୍ୟ ପାଳନରେ କୌଣସି ଅନ୍ତରାୟ ଭୋଗନ୍ତି ନାହିଁ । ଏହାହିଁ ସୌରାଜ୍ୟର ନୀତି ।

ରାଜା ଶଶିଶେଖର ବିଦ୍ୱାନ୍ ଏବଂ ପ୍ରଜାବତ୍ସଳ । ସୁତରାଂ ଉଚ୍ଚ-ନୀଚନିର୍ବିଶେଷରେ ଯେ କୌଣସି ପ୍ରଜାପକ୍ଷରେ ରାଜଦ୍ୱାର ଅବାରିତ ଥିଲା । ଅରଣ୍ୟବାସିବୃନ୍ଦ ସମୁଦ୍ରରୁ ସଂଗୃହୀତ ଶିଶୁସହ ରାଜଦ୍ୱାରରେ ଉପସ୍ଥିତହେବାମାତ୍ରକେ ସେମାନଙ୍କ ଆଗମନଉଦ୍ଦେଶ୍ୟ ରାଜାଙ୍କର କର୍ଣ୍ଣଗୋଚର ହେଲା । ରାଜା ତତ୍‌କ୍ଷଣାତ୍ ସେମାନଙ୍କୁ ଦର୍ଶନ ଦେଇ ସେମାନଙ୍କର ଉଦ୍ଦେଶ୍ୟ ବୁଝିନେଲେ । ବନବାସିବୃନ୍ଦ ଉପହାର୍ଯ୍ୟ ଶିଶୁର ପ୍ରାପ୍ତିବିଷୟ ଜ୍ଞାପନ କରି ତାହାକୁ ରାଜାଙ୍କଠାରେ ସମର୍ପଣ କଲେ । ପୁତ୍ରାକାଙ୍‌କ୍ଷୀ ରାଜା ଦୈବାତ୍ କାର୍ତ୍ତିକେୟତୁଲ୍ୟ କମନୀୟ ଶିଶୁଟିଏ ଲାଭ କରିବାରୁ ଆନନ୍ଦରେ ଗଦ୍‌ଗଦ ହୋଇ ଭାବିଲେ—ଏହାହିଁ ଈଶ୍ୱରଙ୍କର ମୋପ୍ରତି ଦୟାର ଦାନ । ପୁଣି ତାଙ୍କର ମନେହେଲା— ଆଜଠାରୁ ମୋର ଅପୁତ୍ରକତା ଦୂରୀଭୂତ ହେଲା । ସୁତରାଂ ସେ ତାହାକୁ ଆତ୍ମଜ ମନେକରି ଆନନ୍ଦରେ ବିହ୍ୱଳ ହୋଇଗଲେ । ରାଜା

ଜନବାସୀମାନଙ୍କୁ ସେମାନଙ୍କର ଏହି ଅପୂର୍ବ ଉପହାରଯୋଗୁଁ ବହୁ ପାରିତୋଷିକ ପ୍ରଦାନ କରି ବିଦାୟ ଦେଲେ ।

ପୁତ୍ରପ୍ରାପ୍ତି ଯୋଗୁଁ ରାଜନବର ଏବଂ ରାଜନଗରରେ ମହୋତ୍ସବର ଆୟୋଜନ ହେଲା । ଦେବାଳୟମାନ ପୂଜାଆରତୀର ଶଙ୍ଖଘଣ୍ଟାରେ ଶବ୍ଦାୟମାନ ହେବାକୁ ଲାଗିଲା । ଆବାଳବୃଦ୍ଧବନିତା ମିଷ୍ଟାନ୍ନ-ଭୋଜନରେ ପରମ ପରିତୋଷ ଲାଭ କଲେ । ଶୁଭମୁହୂର୍ତ୍ତରେ ଶିଶୁର ନାମକରଣ ନିମନ୍ତେ ମାଙ୍ଗଳିକ ଅନୁଷ୍ଠାନ ମଧ୍ୟ ହୋଇଗଲା । ଶିଶୁଟି ମିହିରତୁଲ୍ୟ ତେଜସ୍ୱୀ ହୋଇଥିବାରୁ ରାଜକୀୟ ପଣ୍ଡିତମଣ୍ଡଳୀ ଏବଂ ରାଜପୁରୋହିତମାନଙ୍କ ନିରୂପଣ ଅନୁସାରେ ତାହାର ମିହିର ନାମକରଣ କରାଗଲା ।

ଏଣିକି ସେ ରାଜପୁରୀରେ ପୂର୍ବ ଅବସାଦ ଆଉ ରହିଲା ନାହିଁ । ରାଜା ଏବଂ ରାଣୀ ତଥା ଦାସଦାସୀବୃନ୍ଦ ସମସ୍ତେ ସତେଜ ଦେଖାଗଲେ । ସମଗ୍ର ରାଜପୁରୀ ସର୍ବଦା ଉତ୍ସବମୟ ହେଲା । ସତେ ଯେପରି ରାଜଭବନରେ ମିହିରର ଉଦୟ ହୋଇଅଛି । ଶିଶୁ ମିହିର ରାଜା ଏବଂ ରାଣୀଙ୍କର ଆଦରର ଧନ ହୋଇ ରାଜପୁରୀରେ, ରାଜଭୋଗରେ ପାଳିତ ହେବାକୁ ଲାଗିଲା ।

ସଂସାର ସୁଖଦୁଃଖର ସମନ୍ୱୟସ୍ଥଳ । ଚକ୍ରନେମୀକ୍ରମରେ ସୁଖ ଏବଂ ଦୁଃଖର ଅନୁବର୍ତ୍ତନ ହେବା ସ୍ୱାଭାବିକ । ରାଜା ଶଶିଶେଖର ବହୁକାଳାବଧି ଅନପତ୍ୟତା ଦୁଃଖରେ ଅବସନ୍ନ ହୋଇ ପଡ଼ିଥିଲେ । ବର୍ତ୍ତମାନ ତାଙ୍କର ଭାଗ୍ୟର ଉଦୟବେଳା ଉପସ୍ଥିତ ହୋଇଅଛି । ସୁଖ ହେଉ, ଦୁଃଖ ହେଉ, କେହି ଏକାକୀ ଆସେ ନାହିଁ । ଯେଉଁ

ଅବସ୍ଥା ଯେତେବେଳେ ଆସେ, ସେତେବେଳେ ତାହାଙ୍କ ଅନୁଷଙ୍ଗୀଙ୍କ ବହୁ ଅନୁକୂଳ ସହଚର ମଧ୍ୟ ତାହା ସଙ୍ଗରେ ଆସିଥାନ୍ତି। ମିହିରଙ୍କୁ ଶ୍ୱଶୁରରୂପରେ ଲାଭକରି ରାଜଦମ୍ପତୀ ପରମସୁଖରେ କାଳାତିପାତ କରୁଅଛନ୍ତି, ଏମନ୍ତ ସମୟରେ ଅନ୍ୟତମ ଶୁଭସୂଚନା ରାଣୀଙ୍କ ଗର୍ଭଲକ୍ଷଣ ସୂଚିତ ହେଲା। ସୁତରାଂ ରାଜଦମ୍ପତୀଙ୍କର ଆନନ୍ଦର ମାତ୍ରା ଅତ୍ୟଧିକ ବୃଦ୍ଧି ଲାଭ କଲା। ବିଦ୍ଧିକୃପାରୁ ରାଣୀ ଯଥା-ସମୟରେ ଶୁଭମୁହୂର୍ତ୍ତରେ ଗୋଟିଏ କନ୍ୟାସନ୍ତାନ ପ୍ରସବ କଲେ।

ନବଜାତ କନ୍ୟାର ସୌନ୍ଦର୍ଯ୍ୟରେ ସୂତିକାଗାର ଅଲଂକୃତ ହେଲା। ତଦ୍ଦର୍ଶନରେ ସନ୍ତାନବତୀ ରାଣୀ ଏବଂ ସନ୍ତାନବାନ୍ ରାଜାଙ୍କର ଜୀବନ ଚରିତାର୍ଥ ହେଲା। ପ୍ରକୃତରେ, ସନ୍ତାନହୀନ ଗାର୍ହସ୍ଥ୍ୟ ନିରର୍ଥକ, ସନ୍ତାନହୀନ ଲୋକର ଜୀବନ ଅପୂର୍ଣ୍ଣ। ସନ୍ତାନବାନ୍-ଦରିଦ୍ର-ଜୀବନରେ ଯେଉଁ ତ୍ୟାଗ ପରିଲକ୍ଷିତ ହୁଏ, ଅନେକ ସ୍ଥଳରେ ନିଃସନ୍ତାନ ଧନୀ ପକ୍ଷରେ ତାହା ଦୁର୍ଲଭ ହୋଇଥାଏ। ପିତା ମୂର୍ଖ ହୁଅନ୍ତୁ ବା ନିର୍ଦ୍ଧନ ହୁଅନ୍ତୁ, ପୁତ୍ର-କନ୍ୟାମାନଙ୍କ ପ୍ରତି ବାତ୍ସଲ୍ୟରେ ବିଗଳିତ ହୋଇ ନିଜର ସୁଖ-ସ୍ୱାର୍ଥରେ ଜଳାଞ୍ଜଳି ଦେଇ ସେମାନଙ୍କୁ ଲାଳନ ପାଳନ କରିବାରେ ଯେଉଁ ଦିବ୍ୟ ଆନନ୍ଦ ଉପଭୋଗ କରନ୍ତି, ତାହା ସନ୍ତାନହୀନପକ୍ଷରେ ଦୁର୍ଲଭ। ମାନବ ଜୀବନକୁ ମଧୁମୟ, ଉଦାର ଏବଂ ପବିତ୍ର କରିବାରେ ସନ୍ତାନହିଁ ନିଦାନ। ତେଣୁ ସନ୍ତାନଲାଭ ଅଳ୍ପ ତପସ୍ୟାର ଫଳ ନୁହେ।

ନବଜାତ କନ୍ୟା ରାଜା ଏବଂ ରାଣୀଙ୍କର ଅସୀମ ଆଦର ଏବଂ ପ୍ରଗାଢ଼ ଯତ୍ନରେ କ୍ରମଶଃ ବୃଦ୍ଧି ପ୍ରାପ୍ତ ହେଲା। ରାଜକୁଳରେ

# ଖନା

ଏପରି ସୁଦର୍ଶନା କନ୍ୟା ଦୁର୍ଲ୍ଲଭ । "ଯତ୍ରାକୃତିସ୍ତତ୍ର ଗୁଣା ବସନ୍ତି" ଅର୍ଥାତ୍ ଗୁଣ ସକଳ ଆକୃତିର ଅନୁଗତ । ସେହିପରି ରାଜକନ୍ୟାର ଅଲୌକିକ ଗୁଣର ପରିଚୟ ମଧ୍ୟ ରୂପରୁ ସହଜରେ ଅନୁମିତ ହେଉଥିଲା । ଦୟାମୟ ପରମେଶ୍ୱର ପୂର୍ବଜନ୍ମ ଦୁଷ୍କୃତରୁ କ୍ଷମାଦେଇ ଏ କନ୍ୟାରତ୍ନ ଦେଇଥିବାରୁ ରାଜପିତାମାତା କନ୍ୟାର କ୍ଷମା ନାମକରଣ କରିଥିଲେ । କିନ୍ତୁ ତାହାର ଡାକନାମ ହେଲା ଖନା । ସେହିଠାରୁ, କ୍ଷମା ଖନା ନାମରେ ଅଦ୍ୟାପି ସର୍ବତ୍ର ପରିଚିତ ।



# ଚତୁର୍ଥ ପରିଚ୍ଛେଦ ।।

ରାଜା ଶଶିଶେଖର କନ୍ୟାଲାଭ ପୂର୍ବରୁ ମିହିରଙ୍କୁ ପୁତ୍ରରୂପେ ଗ୍ରହଣ କରିଥିଲେ । କିନ୍ତୁ କନ୍ୟାଲାଭପରେ ତାହା ରୂପାନ୍ତରିତ ହେଲା । ରାଜା ଏବଂ ରାଣୀ ଉଭୟଙ୍କ ମନରେ ସ୍ୱତଃ ଧାରଣା ହେଲା ଯେ ସମ୍ଭବତଃ ପରମେଶ୍ୱର କ୍ଷମାକୁ ମିହିରର ପତ୍ନୀ ହେବା ଉଦ୍ଦେଶ୍ୟରେ ଜନ୍ମ ଦେଇଅଛନ୍ତି । ପ୍ରକୃତରେ ଉଭୟଙ୍କର ରୂପ, ଗୁଣ ଏବଂ ବୟସ ଦେଖିଲେ ଯେ କେହି ଏପରି ଅନୁମାନ ନକରି ରହି ପାରିବ ନାହିଁ । ରାଜା ଏବଂ ରାଣୀ ଉକ୍ତ ସିଦ୍ଧାନ୍ତରେ ଉନ୍ମୋଦିତ ହୋଇ ଉଭୟଙ୍କୁ ଏକତ୍ର ସମାନ ଯତ୍ନରେ ପାଳନ କଲେ । ତେଣୁ ଅତ୍ୟନ୍ତ ଶୈଶବରୁ କ୍ଷମା ଏବଂ ମିହିର ଉଭୟଙ୍କର ଆହାର, ବିହାର, କ୍ରୀଡ଼ା ଓ ଅନ୍ୟାନ୍ୟ ସକଳ କାର୍ଯ୍ୟ ଏକତ୍ର ସମାହିତ ହେଲା ।

କ୍ରମେ ଉଭୟଙ୍କର ବିଦ୍ୟାରମ୍ଭବୟସ ଉପସ୍ଥିତ ହେଲା । ରାଜାଙ୍କର କୁଳ ପୁରୋଧା ଅତ୍ୟନ୍ତ ନିଷ୍ଠାପର ଏବଂ ଅଦ୍ୱିତୀୟ ବିଦ୍ୱାନ୍ ଥିଲେ । ତାହାଙ୍କର ଭୂଗୋଳ, ଖଗୋଳ ଏବଂ ପାତାଳଗୋଳ ବିଦ୍ୟାରେ ଅସାଧାରଣ ପାଣ୍ଡିତ୍ୟ ଥିଲା । ରାଜା କ୍ଷମା ଏବଂ ମିହିରର ଶିକ୍ଷାଭାର ସେହି ପୁରୋଧାଙ୍କ ଠାରେ ନ୍ୟସ୍ତ କଲେ । ଶୁଭମୁହୂର୍ତ୍ତରେ ଗୁରୁଦେବ ବିଦ୍ୟାରମ୍ଭ କରାଇଲେ । ମେଧାବିନୀ କ୍ଷମା ଏବଂ ମେଧାବୀ ମିହିର ଅତ୍ୟଳ୍ପ କାଳ ମଧ୍ୟରେ ପ୍ରାଥମିକ ଶିକ୍ଷା ସମାପନ କରି ଜ୍ୟୋତିଃଶାସ୍ତ୍ର-ଅଧ୍ୟୟନରେ ନିଯୁକ୍ତ ହେଲେ । ଗୁରୁଦେବଙ୍କ ଅନୁଗ୍ରହରୁ ସୌଭାଗ୍ୟଶାଳୀ ଛାତ୍ର ଛାତ୍ରୀ ଦୁହେଁ ଅଳ୍ପ ବୟସରେ ଜ୍ୟୋତି--

# ଖେଳା

ବିଦ୍ୟାଚର୍ଚ୍ଚା ମଧ୍ୟ କୁଶଳତା ଲାଭକରି ଗୁରୁଦେବ ଏବଂ ପିତା ମାତାଙ୍କର ପରମ ପରିତୋଷ ଆକର୍ଷଣ କରି ପାରିଥିଲେ । ଉଭୟ ଜ୍ୟୋତିଃଶାସ୍ତ୍ରରେ ସୁପଣ୍ଡିତ ହେଲେହେଁ ଖନା ମିହିର ଅପେକ୍ଷା ବିଦ୍ୟାରେ ସରସ୍ ହୋଇ ପାରିଥିଲା ।

ଖନା ଏବଂ ମିହିରଙ୍କର ଏକତ୍ର ଆହାର, ଏକତ୍ର ବିହାର, ଏକତ୍ର ଅଧ୍ୟୟନ ଏବଂ ଏକତ୍ର କ୍ରୀଡା ସନ୍ଦର୍ଶନ କରି ରାଜା ଏବଂ ରାଣୀ କୃତାର୍ଥ ହେଉଥିଲେ । ସେ ଦୁହିଁଙ୍କ ମଧ୍ୟରେ ଏପରି ବନ୍ଧନ ହେଲା ଯେ କେହି କାହାରିଠାରୁ କ୍ଷଣମାତ୍ର ବିଚ୍ଛିନ୍ନ ହୋଇ ରହି ପାରୁନଥିଲା । ଦୈବାତ୍ ସାମାନ୍ୟ ବିଚ୍ଛେଦ ହେଲେ ଉଭୟ ପ୍ରାଣ ଉଦ୍‌ବେଗରେ ପୂର୍ଣ୍ଣହୋଇଥିଲା । ଦୁହିଁଙ୍କର ବୟସ ଏବଂ ବିଦ୍ୟା ଯେପରି ବୃଦ୍ଧି ଲାଭ କରୁଥିଲା, ଅନ୍ୟୋନ୍ୟ ଆନ୍ତରିକତା ମଧ୍ୟ ତଦ୍ରୂପ ବର୍ଦ୍ଧିତ ହେଉଥିଲା । ଏବଂବିଧ ସ୍ପୃହା ବା ଚେଷ୍ଟାରେ କି ରତ୍ନ ଲାଭହୁଏ, ତାହା ସେହି ଅନୁଭବୀକୁହିଁ ଗୋଚର । ଏହିଭବ ନିକଟରେ ଧନ, ମାନ, କୁଳ, ଏମନ୍ତକି ଜୀବନ ପର୍ଯ୍ୟନ୍ତ ତୁଚ୍ଛ ଅକିଞ୍ଚିତ୍କର, ଏଥିରେ ସନ୍ଦେହ କଣ ଅଛି ? ଯେଉଁ ମିଥୁନ ଆଶୈଶବ ଏହିପରି ଭାବରେ ଗଠିତ, ସେହି ମିଥୁନରେହିଁ ପ୍ରକୃତ ମିଳନ ହୋଇଥାଏ ଏବଂ ସେହି ଦାମ୍ପତ୍ୟହିଁ ସ୍ୱର୍ଗସୁଖର କାରଣ ହୋଇଥାଏ ।



# ପଞ୍ଚମ ପରିଚ୍ଛେଦ ।

ସୁଖର ଉପାଦେୟତା ନିମନ୍ତେ ଦୁଃଖର, ଆଲୋକର ଆଦର ନିମନ୍ତେ ଅନ୍ଧକାରର ଏବଂ ସାଧୁତାର ପ୍ରସାର ନିମନ୍ତେ ଅସାଧୁତାର ସୃଷ୍ଟି ପ୍ରକୃତିସିଦ୍ଧ । ସେହି ପରସ୍ପରବିରୁଦ୍ଧ ଦୁଇଟି ଭାବ ପ୍ରକୃତି ସଂପୃକ୍ତ ଭାବରେ ରହିବା ଅଧିକ ଆବଶ୍ୟକ । ସୁତରାଂ ସର୍ବତ୍ର ଏହିପରି ପରସ୍ପର ବିରୋଧାତ୍ମକ ଦୁଇଟି ଭାବର ସମାବେଶ ହୋଇଥାଏ ।

ସିଂହଳ ରାଜବଂଶରେ ଭ୍ରାତୃଷ୍ପୁତ୍ର ସହିତ କନ୍ୟାକୁ ବିବାହ ଦେବା ଚିରପ୍ରଚଳିତ ପ୍ରଥା । ରାଜା ଶଶିଶେଖରଙ୍କର ଗୋଟିଏ ଭ୍ରାତୃଷ୍ପୁତ୍ର ଥିଲା । ତାହାର ନାମ ବଜ୍ରାଙ୍ଗ । ପାରମ୍ପରିକ ପ୍ରଥାନୁସାରେ ବଜ୍ରାଙ୍ଗହିଁ କ୍ଷମାର ଭାବୀ ପତି ହେବା ବିଧେୟ । କିନ୍ତୁ ବଜ୍ରାଙ୍ଗ ନିତାନ୍ତ କର୍କଶ, କଦାକାର ଏବଂ ନିରକ୍ଷର । କ୍ଷମାତୁଲ୍ୟ ବିଦୁଷୀ ରୂପବତୀ କନ୍ୟା ନିମନ୍ତେ ଏ ପ୍ରକାର ଅଯୋଗ୍ୟ ବରପାତ୍ର ନିର୍ବାଚନ କୌଣସି ପାଷଣ୍ଡ ପିତା ସୁଦ୍ଧା କରି ନପାରେ । ପରମ ପଣ୍ଡିତ ଶଶିଶେଖର ଅବା ଏହା କିପରି କଳ୍ପନା କରନ୍ତେ ? ପକ୍ଷାନ୍ତରେ କ୍ଷମା ତୁଲ୍ୟ କନ୍ୟାରତ୍ନ ପତ୍ନୀ ରୂପେ ଲାଭ କରି ପାରିଲେ କେଉଁ ଜଡ଼ ପ୍ରାଣ ସୁଦ୍ଧା କୃତାର୍ଥ ନହେବ ? ସୁତରାଂ ଗଣ୍ଡ ଭ୍ରାତୃଷ୍ପୁତ୍ର ବଜ୍ରାଙ୍ଗ ସ୍ୱକୀୟ ପରମ୍ପରା ଗତ ଅଧିକାର କ୍ଷମାଠାରୁ ତୁଟାଇ ଦେବା ଅସମ୍ଭବ । ବରଂ କ୍ଷମାକୁ ପତ୍ନୀ ରୂପେ ଲାଭ କରିବା ଆକାଙ୍କ୍ଷା । ତାହାର ଦିନୁଁ ଦିନ ବଳବତୀ ହେବାକୁ ଲାଗିଲା । କିନ୍ତୁ ତେଣେ କନ୍ୟାପିତା ରାଜା ମିହିରଙ୍କୁ ଜାମାତା କରିବାକୁ, କ୍ଷମାର ଜନ୍ମଦିନରୁ କୃତସଂକଳ୍ପ

# ଘଟନା

ପିତୃବ୍ୟ--ରାଜାଙ୍କର ମିହୁର ପ୍ରତି ଅନୁରାଗ ବୃଦ୍ଧି ଏବଂ ନିଜ ପ୍ରତି ବିରାଗବୃଦ୍ଧି ଅନୁଭବ କରିବାରୁ ବଜ୍ରାଙ୍ଗର ଆଶା ମଉଳିଯାଇ ପଡ଼ିବାକୁ ଲାଗିଲା । ସେ ସ୍ପଷ୍ଟରୂପେ ବୁଝି ପାରିଲା ଯେ ତାର ଉଚ୍ଚ ସ୍ୱପ୍ନ-ପଥର ଏକମାତ୍ର କଣ୍ଟକ ମିହୁର । ଏହାର ଉନ୍ମୂଳନ କରି ନପାରିଲେ ଉଦ୍ଦିଷ୍ଟ ଫଳ ଫଳୀଭୂତ ହେବା ଅସମ୍ଭବ । ସୁତରାଂ ମିହୁରର ନାଶକରଣ ନିମନ୍ତେ ସେ ନାନା ଉପାୟ ଚିନ୍ତା କରିବାକୁ ଲାଗିଲା ।

ଏକଦା ମିହୁର ଶିକାର ଉଦ୍ଦେଶ୍ୟରେ ଉଦ୍ୟାନ ଅଭିମୁଖରେ ଗମନ କରୁ କରୁ ମାର୍ଗରେ ଦୈବାତ୍ ବଜ୍ରାଙ୍ଗ ସହିତ ତାହାର ସାକ୍ଷାତ ହେଲା । ସେହି ନରାଧମ ଏହି ସୁଯୋଗ ଲାଭ କରି ନିଜର ଅଭୀଷ୍ଟ ସିଦ୍ଧି ନିମନ୍ତେ ତାହାକୁ ନାନା ତିରସ୍କାର କରିବାକୁ ଲାଗିଲା । ସେ କହିଲା—ମିହୁର ! ତୁ ଜାଣୁନା ? ତୁ ଅଜ୍ଞାତ କୁଳଶୀଳ, ଅଜ୍ଞାତ-ପିତୃମାତୃକ, ଅଧିକନ୍ତୁ ପରାନ୍ନପ୍ରତିପାଳିତ ? ମାନବସମାଜରେ ଏତାଦୃଶ ହେୟ ହୋଇ ସୁଦ୍ଧା ତୁ ପୁଣି ମୋର ପ୍ରାପ୍ୟ କ୍ଷମାକୁ ଲାଭ କରିବାରେ ସାହସ କରୁଅଛୁ ? ଏହ ତ ଅଳ୍ପ ଆସ୍ପର୍ଦ୍ଧାର ପରିଚୟ ନୁହେଁ । କିନ୍ତୁ ମନେ ରଖ—ଦୁରାଶ୍ୟ ! ଏ କଳ୍ପନା ତୋର ଆକାଶ-କୁସୁମତୁଲ୍ୟ ଅସମ୍ଭବ ।

ମିହୁର ଗନ୍ତବ୍ୟ ପଥରେ ହଠାତ୍ ଏପରି ତିରସ୍କୃତ ହେବାରୁ ସ୍ତମ୍ଭିତ ଏବଂ ବିଷଣ୍ଣ ହୋଇଗଲା । ସେ କଠୋର ଭର୍ତ୍ସନା ତାହାର ପ୍ରତ୍ୟେକ ଧମନୀକୁ ଭେଦ କଲା । ସେ ସେତେବେଳେ ଭାବିଲା—ବାସ୍ତବିକ୍ ମୁଁ ତ ଅଜ୍ଞାତକୁଳଶୀଳ, ଅଜ୍ଞାତ ପିତୃମାତୃକ ଏବଂ ପରାନ୍ନ-ପ୍ରତିପାଳିତ । ଏଥିରୁ କୌଣସି ଗୋଟିକ ସୁଦ୍ଧା ମିଥ୍ୟା ନୁହେଁ । ପ୍ରକୃତରେ ଏପରି ଲୋକର ଅବା ସ୍ୱାତନ୍ତ୍ର୍ୟ କାହିଁ ଅସିବ ? ଏପରି

ଅବସ୍ଥାରେ ଜୀବନ ଧାରଣ କରିବା ଅପେକ୍ଷା ବରଂ ମୃତ୍ୟୁ ଶ୍ରେୟସ୍କର । ମିହିର ଏହିପରି ନାନା ଆତ୍ମଗ୍ଳାନିରେ ଅଭିଭୂତ ହୋଇ ଭଗ୍ନ ହୃଦୟରେ ରଜନୀବରକୁ ପ୍ରତ୍ୟାବୃତ୍ତ ହେଲା ।

ମିହିର କ୍ଷମାର ଅଗୋଚରରେ ଉଦ୍ୟାନ ଭ୍ରମଣ ନିମନ୍ତେ ପ୍ରସ୍ଥାନ କରିଥିଲା । କ୍ଷମା ମିହିରଠାରୁ ଏହି ଅଳ୍ପସମୟ ବଚ୍ଛିନ୍ନ ହେବାରେ କ୍ଷିପ୍ତପ୍ରାୟ ଅଧୀର ହୋଇ ଇତସ୍ତତଃ ଅନୁସନ୍ଧାନ କରୁଥିଲା । ମିହିର ଯେ ମାର୍ଗରେ ପ୍ରଚଣ୍ଡ କଣ୍ଟକ ତିରସ୍କୃତ, ଏହା କ୍ଷମାର ଅଗୋଚର । ମିହିରଗତପ୍ରାଣା କ୍ଷମା ତାହାର ଅଦର୍ଶନରେ ହା ହତୋଽସ୍ମି ହେବା ସମୟରେ ହଠାତ୍ ସେ ରାଜପୁରରେ ଉପସ୍ଥିତ ହେଲା । କିନ୍ତୁ ତାହାର ମୁଖ ବିଷାଦରେ ବିବର୍ଣ୍ଣ, ଓଷ୍ଠ ଶୁଷ୍କ ଏବଂ ଦୃଷ୍ଟି ନିସ୍ତେଜ । କ୍ଷମା ପ୍ରାଣାଧିକ ପ୍ରିୟତମଙ୍କର ଏବମ୍ବିଧ ଦୁରବସ୍ଥା ଦର୍ଶନରେ ଆତଙ୍କିତ ହୋଇ ଜିଜ୍ଞାସା କଲା—ମିହିର ! ତୁମ୍ଭର ଏପରି ଦୁରବସ୍ଥା କାହିଁକି ? ଦୁଃଖର ଆବେଗରୁ ମିହିରର କଣ୍ଠରୋଧ ହୋଇଗଲା । କେବଳ ଦୁଇଟି ଅଶ୍ରୁବିନ୍ଦୁ ଦୁଇ ଚକ୍ଷୁରୁ ଦୋଦୁଲ୍ୟମାନ ହେଲା । କ୍ଷମା ଏଥିରେ ଅଧିକ ବ୍ୟସ୍ତ ହୋଇ ଦୁଃଖର କାରଣ ତନ୍ନତନ୍ନ ପଚାରିବାରେ ମିହିର ବହୁକଷ୍ଟରେ କହିଲା—ଯାହା ଘଟନା ଘଟିଛି, ସେଥିରେ ଏ ଅବସ୍ଥା କିଅଣ, ଏତୋଧିକ ଗୁରୁତର ଅବସ୍ଥା ଅତ୍ୟଳ୍ପକ୍ଷଣପରେ ତୁମ୍ଭେ ସ୍ୱଚକ୍ଷୁରେ ଦେଖିବ । ଏହା ଶୁଣି କ୍ଷମା ଶଶବ୍ୟସ୍ତ ହୋଇ କାରଣ ଜାଣିବାକୁ ବହୁ ଅନୁନୟ ବିନୟ କଲା ।

"ସ୍ୱଜନସ୍ୟହି ଦୁଃଖମଗ୍ରତୋ ବିବୃତଦ୍ୱାରମିବୋପ ଜାୟତେ", ଅର୍ଥାତ୍ ମନରେ ଦାରୁଣ ବ୍ୟଥା ହେଲେ, ତାହା ବ୍ୟକ୍ତ କରି ହୃଦୟର ଭାର ଲଘୁ କରିବାକୁ ଲୋକ ଆତ୍ମୀୟସ୍ୱଜନ ଖୋଜି

ଭୁଲେ । ବର୍ତ୍ତମାନ ସଂସାରରେ ମିହିରର କ୍ଷମା ଅପେକ୍ଷା ଅଧିକ ଆତ୍ମୀୟ ଅବା କିଏ ଅଛି ? ତାହା ଯଦି ହୋଇନଥାନ୍ତା, ତେବେ ସେ କ୍ଷମା ନିକଟରୁ ଅବା କାହିଁକି ଅ[illegible]ନ୍ତା ? କିମ୍ବା ନିଜର ମାନସୀ ବ୍ୟଥା ସ୍ୱତଃ କ୍ଷମାକୁ କାହିଁକି ଜଣାଇ ଥାନ୍ତା ? କ୍ଷମାର ଘନଘନ ପ୍ରଶ୍ନରେ ତାହା ଅଧିକ ଉଚ୍ଛୁଳିବାରୁ ତାହାର କଣ୍ଠରୋଧ ହୋଇଥିଲା । ତେଣୁ ପ୍ରକାଶ କରିବାରେ ସାମାନ୍ୟ ବିଳମ୍ବ ଘଟିଲା । ଶେଷକୁ ସେ କଥଞ୍ଚିତ୍ ଧୈର୍ଯ୍ୟ ଧାରଣକରି ଅଶ୍ରୁ-ଗଦ୍‌ଗଦ ହୋଇ ବଜ୍ରାଙ୍ଗକଥିତ କଠୋର ବର୍ଣ୍ଣନା ସକଳ ତାହାକୁ ଜଣାଇଲା ।

କ୍ଷମା ମିହିରଦୁଃଖରେ ସମବେଦନା ଅନୁଭବ କରି ଆଲିଙ୍ଗନପୂର୍ବକ ଅଶ୍ରୁସିକ୍ତ କଣ୍ଠରେ କହିଲା— କିଏ କହିଲା— ତୁମ୍ଭେ ଅଜ୍ଞାତକୁଳଶୀଳ ? କିଏ କହିଲା—ତୁମ୍ଭେ ଅଜ୍ଞାତ-ପିତୃମାତୃକ ? କିଏ କହିଲା—ତୁମ୍ଭେ ଅଜ୍ଞାତଜନ୍ମଭୂମି ? ଏଥିରେ ତୁମ୍ଭେ କାହିଁକିବା ବିବ୍ରତ ? ତୁମ୍ଭେ ଜ୍ୟୋତିଃଶାସ୍ତ୍ରରେ ସୁପଣ୍ଡିତ । ଏ ସମସ୍ତ ପ୍ରଶ୍ନର ସମାଧାନତ ତୁମ୍ଭର ନଖଦର୍ପଣରେ ନିହିତ । ତାହା ଯଦି ନହେଲା, ତେବେ ମୁଁ ବର୍ତ୍ତମାନ ସେ ସମସ୍ତ ତଥ୍ୟ ଜଣାଇ ଦେଉଛି, ତୁମ୍ଭେ ମନୋବ୍ୟଥା ଦୂରକର ।

କ୍ଷମା କ୍ଷଣବିଳମ୍ବ ନକରି ସଙ୍ଗେ ସଙ୍ଗେ ଜ୍ୟୋତିର୍ଗଣନା-ବଳରେ କହିଲା—ମିହିର ! ମନୋରମ—ପବିତ୍ର ଭାରତବର୍ଷର ଅନ୍ତର୍ଗତ ବିଖ୍ୟାତ ଉଜ୍ଜୟିନୀ ନଗରୀ ତୁମ୍ଭର ଜନ୍ମଭୂମି; ତୁମ୍ଭେ ଆଶୈଶବ ମାତୃହୀନ; କିନ୍ତୁ ଜଗଦ୍‌ବିଖ୍ୟାତ ଜ୍ୟୋତିର୍ବିତ୍ ତୁମ୍ଭଙ୍କ ପିତା ବରାହମିହିର ଅଦ୍ୟାପି ଜୀବିତ ।

# ଶମା

ମିହୁର ଷମାର ଖେଣନାରୁ ନାଜୋଳ ଅଥବା ଅଷପୂର୍ନମା ଜାଣି ପାରି ଅଶୁସ୍ଥ ଏବଂ ଆନନ୍ଦିତ ହେଲା । ବିଶେଷତଃ ଚାଷଣ୍ଡୁ, ବଜ୍ରାଙ୍କର ଏବଂଏଥି ଭର୍ତ୍ସନା[illegible]ଡାରଣି ମଧ୍ୟ ଷମା ବିଶଦଭାବରେ ବୁଝାଇ ଦେବାରେ ତାହାର ସେ ବିଷାଦ ଆଉ ରହିଲା ନାହିଁ । ତଦନନ୍ତର ଷମା ଏବଂ ମିହୁର ଉଭୟ ସୁଣ୍ଠା ଜୀ ପିଚରେ ଅସକ୍ତ ହେଲେ ।



# ଷଷ୍ଠ ପରିଚ୍ଛେଦ ।

ଦୁର୍ମତି ବଜ୍ରାଙ୍ଗ ମିହିରର ପ୍ରତି ଭର୍ତ୍ସନା ପ୍ରୟୋଗ କରି ଆଶା କରିଥିଲା—ମିହିର ଏତଦ୍ଦ୍ୱାରା ବିଚଳିତ ହୋଇ ସିଂହଳ-ଗଜବଂଶସମ୍ପର୍କ ତୁଟାଇ ଦେଇପାରେ । ତେତେବେଳେ ହୋଇପାରିଲେ କ୍ଷମା ସହିତ ତାହାର ପୁଣି ସମ୍ଭାଷଣ ହେବା ଅସମ୍ଭବ ହେବ । ତାହାହେଲେ ନିଜର ବିବାହରେ ଅନ୍ୟ କୌଣସି ଅନ୍ତରାୟ ଘଟିବ ନାହିଁ । କିନ୍ତୁ ପରିଣାମରେ ଏ କଳ୍ପନା କଳ୍ପନାରେହିଁ ପର୍ଯ୍ୟବସିତ ହେଲା । ଫଳତଃ କ୍ଷମା ଏବଂ ମିହିର ଏ ଦୁହିଁଙ୍କର ସମ୍ପର୍କ ଶିଥିଳ ହେବା ଦୂରେଥାଉ, ବରଂ ଉତ୍ତରୋତ୍ତର ବୃଦ୍ଧି ଲାଭ କରିବାକୁ ଲାଗିଲା । ଏତଦ୍ଦର୍ଶନରେ ବଜ୍ରାଙ୍ଗର ନୈରାଶ୍ୟ ଘନୀଭୂତ ହେଲା । ସୁତରାଂ ସେ ନିଶ୍ଚେଷ୍ଟ ନହୋଇ ନୂତନ ପ୍ରତିକାର ଚିନ୍ତାରେ ବ୍ୟଗ୍ର ହେଲା ।

ବର୍ତ୍ତମାନ କ୍ଷମା ଏବଂ ମିହିର ଉଭୟ ଯୌବନରେ ପଦାର୍ପଣ କରିଅଛନ୍ତି । ଏ ନବଯୌବନରେ ମଧ୍ୟ ସେ ଦୁହଙ୍କୁ ସ୍ୱଚ୍ଛନ୍ଦ ଆହାର ବିହାର ସମ୍ପନ୍ନ କରିବାରେ ସୁବିଧା ମଧ୍ୟ ଦିଆଯାଇଅଛି । ସୁତରାଂ ଭାବୀ ଦମ୍ପତୀ ଦୁହେଁ ଭ୍ରମନ୍ତ ଆନନ୍ଦରେ ଲଳିତ ଭାବରେ ଦିନାତିପାତ କରୁଅଛନ୍ତି ।

ମିହିରବିରୋଧୀ ବଜ୍ରାଙ୍ଗ ସେ ଦୁହିଁଙ୍କର ପ୍ରୋକ୍ତ, ନିତ୍ୟ ମିଳନକୁ ଭିତ୍ତି କରି ମହାରାଜାଙ୍କ ନିକଟକୁ ନାମ୍ନୀ ଏ ପତ୍ରରେ ଲେଖିଲା—ଯୌବନର ଉଦ୍ଗମରେ ଏତାଦୃଶ ତରଳମତି ଦୁଇଟି ସ୍ତ୍ରୀ-ପୁରୁଷର

ନିତ୍ୟ ମିଳନଜନିତ କୁଫଳ ପ୍ରତି ଦୃକ୍‌ପାତ ନକରି ଉଦାସୀନ ହେବା ଆପଣଙ୍କ ପକ୍ଷରେ, କଦାପି ଉଚିତ ନୁହେ । ଆପଣ ବିଜ୍ଞ ଏବଂ ବହୁଜ୍ଞ । ସୁତରାଂ ଏହାର ପରିଣାମ ଆପଣ ଅନାୟାସରେ ଅବଧାରଣ କରିପାରିବେ । ସେ ଦୁହିଙ୍କୁ ପୃଥକ୍ ରଖିବା ଯେ ସର୍ବଥା ବିଧେୟ, ଏହା କହିବା ବାହୁଲ୍ୟ ମାତ୍ର । ବଜ୍ରାଙ୍ଗ-ଦିବ୍ୟଙ୍କ ନିକଟରୁ ଏତିକି ମାତ୍ର ଲେଖି ଆଶା କରିଥିଲା । ଏତଦ୍ଦ୍ୱାରା ନବୀନ ପ୍ରେମିକ ପ୍ରେମିକା ଦୁହିଙ୍କର ପ୍ରଣୟସୂତ୍ର ଅବଶ୍ୟ ଖଣ୍ଡିତ ହେବ । ତାହା ହୋଇ ପାରିଲେ ମୋର ଅଭୀପ୍ସିତ ପଥ ନିଷ୍କଣ୍ଟକ ହୋଇଯିବ ।

ରାଜା ଶଶିଶେଖର ଭ୍ରାତୃଷ୍ପୁତ୍ରର ଉଲ୍ଲିଖିତ ପତ୍ର ପାଠ କରି ସ୍ଥିର କଲେ ଯେ ପ୍ରକୃତରେ ବିବାହ ପୂର୍ବରୁ ନବଯୁବକ ଯୁବତୀଙ୍କର ଏପରି ସ୍ୱଚ୍ଛନ୍ଦ ମିଳନ ସୁଫଳପ୍ରଦ ନୁହେ । ସୁତରାଂ କ୍ଷମା ଏବଂ ମିହିରକୁ ଆଦେଶ ଦେଲେ ଯେ ଏଣିକି ତୁମ୍ଭେ ଦୁହେଁ ମିଳିତ ଭାବରେ ନରହି ପୃଥକ୍ ଭାବରେ ରହିବ ଏବଂ ଦୁହିଙ୍କର ପ୍ରତ୍ୟେକ କାର୍ଯ୍ୟ ସ୍ୱତନ୍ତ୍ର ହେବ । ଏହି ଆଦେଶ ଉଭୟଙ୍କ ପକ୍ଷରେ ନିଷ୍ଠୁର ହେଲେହେଁ ପିତାଦେଶ ଅବଶ୍ୟ ପାଳନୀୟ ବୋଲି ଉଭୟ ସେଥିରେ ସମ୍ମତ ହେଲେ ଏବଂ ସେହି ମୁହୂର୍ତ୍ତରୁ ଦୁହିଙ୍କର ପ୍ରତ୍ୟେକ କାର୍ଯ୍ୟ ସ୍ୱତନ୍ତ୍ର ହେଲା । କେହି କାହାର ସହିତ ସାକ୍ଷାତ କରିବା ମଧ୍ୟ ଦୁରୂହ ହେଲା । ଲୋକଚକ୍ଷୁର ତୃପ୍ତି ନିମନ୍ତେ ଏପରି ବିଧାନ ହେଲେହେଁ ସେ ଦୁହିଁଙ୍କ ମଧ୍ୟରୁ ଏକର ମନ ଅନ୍ୟଠାରୁ ପୃଥକ୍ ହୋଇ ପାରିଲା ନାହିଁ । ମନୁଷ୍ୟ ବହିରିନ୍ଦ୍ରିୟ ଚେଷ୍ଟାକୁ ସିନା ନିୟନ୍ତ୍ରଣ କରିପାରେ, କିନ୍ତୁ ଅନ୍ତରିନ୍ଦ୍ରିୟ ନିକଟରେ ପରାଭବ ସ୍ୱୀକାର କରେ । ଲଜ୍ଜା, ଭୟ ବା ପ୍ରଲୋଭନରେ ଲୋକ ନିଜର ଦୁଷ୍କାର୍ଯ୍ୟମାନ ଗୋପ-

ମାନଙ୍କରୁ ପୃଥକ୍ ରହିଲେହେଁ ତାଙ୍କୁ ତାହାର ମାନସିକ ଚିନ୍ତାରୁ ପ୍ରତ୍ୟକ୍ଷ ଭାବରେ ନିବୃତ୍ତ କରାଇବା ଅସମ୍ଭବ । ଅନ୍ତରର ଭାବ କେବଳ ଅନ୍ତର୍ଯ୍ୟାମୀ ବିଦିତ ଏବଂ ସେହି ସର୍ବନିୟାମକହିଁ ପ୍ରାଣୀର ମନୋଭାବ ନିୟନ୍ତ୍ରଣରେ ସମର୍ଥ । ରାଜା, ପ୍ରଜା ସମସ୍ତଙ୍କର ବିଶ୍ୱାସ ହେଲା ମିହିର କ୍ଷମାଠାରୁ ସର୍ବଥା ପୃଥକ୍ । କିନ୍ତୁ କାର୍ଯ୍ୟତଃ ଉଭୟଙ୍କର ମିଳନ ଏତଦ୍ଦ୍ୱାରା ଘନିଷ୍ଠ ହେଲା । ଦୁହେଁ ଏକତ୍ରାବସ୍ଥିତ ସମୟରେ ବେଳେ ବେଳେ ଯାହା କାର୍ଯ୍ୟଲିପ୍ତ ହୋଇ କାର୍ଯ୍ୟ ପ୍ରତି ମନୋଯୋଗୀ ହେଉଥିଲେ, ବର୍ତ୍ତମାନ ତତ୍ପରବର୍ତ୍ତିରେ ଏକର ମନ ସର୍ବଦା ଅନ୍ୟ ଉପରେ ନ୍ୟସ୍ତ ହେଲା ।

ଅଭାବରୁ ଉପାୟର ଉଦ୍ଭବ, ଏହା ସ୍ୱାଭାବିକ । ପ୍ରେମିକ ପ୍ରେମିକା ଦୁହେଁ ବହିରିନ୍ଦ୍ରିୟଭୋଗ୍ୟମିଳନରୁ ବଞ୍ଚିତ ହେବାରୁ ସେଥିରୁ ରକ୍ଷାଲାଭ କରିବା ନିମନ୍ତେ ଉପାୟ ଚିନ୍ତାରେ ଅହରହଃ ଆସକ୍ତ ହେଲେ । ସୂକ୍ଷ୍ମବୁଦ୍ଧି ପୁଣି ଦୁମାସ୍ତର ଜନନୀ ଭାବୀ ମନ୍ତ୍ରି ପତ୍ନୀଙ୍କର ପ୍ରତିଭା ଅନନ୍ୟସାଧାରଣ । ସୁତରାଂ ସୁଫଳପ୍ରଦ ଉପାୟ ଅକ୍ଳେଶରେ ତାହାଙ୍କର ଆୟତ୍ତ ହେଲା । ଆଶୈଶବ ଯେଉଁ ପ୍ରେମିକ ପ୍ରେମିକାଙ୍କର ମୁହୂର୍ତ୍ତମାତ୍ର ଅଦର୍ଶନ ଦୁଃଖ ଅନୁଭୂତ ହୋଇ ନଥିଲା ସେ ଅବା କେତେକାଳ ଉକ୍ତ ଦାରୁଣ ନିଷେଧ ପାଳନ କରି ପାରନ୍ତେ ? ଫଳତଃ ଉପାୟ ବଳରେ ଗୋପନରେ ଉଭୟଙ୍କର ମିଳନ ସୁବିଧା ପାଇ ପାରୁଥିଲା । ସୁତରାଂ ଦୁହିଙ୍କ ମଧ୍ୟରୁ କାହାରି କ୍ଷୋଭର କାରଣ କିଛି ରହିଲା ନାହିଁ ।

ରାଜା କ୍ଷମା ଏବଂ ମିହିରକୁ ପୃଥକ୍ ଭାବରେ ରହିବାକୁ ଆଦେଶ ଦେବା ଦିବସଠାରୁ ସେ ଦୁହିଁଙ୍କର ପରିଣୟ ନିମନ୍ତେ

ଅତ୍ୟନ୍ତ ଉଦ୍‌ବିଗ୍ନ ହୋଇ ପଡ଼ିଲେ । ମାତ୍ର ତଦ୍ଦିବସାବଧି ମିହିରଙ୍କ କୁଳଗୋତ୍ର ଗୋଚର ନହେବାରୁ ସେ ସେଥିରେ ଅଗ୍ରସର ହୋଇ ପାରୁ ନଥିଲେ । ସୁତରାଂ ରାଜା ଅତ୍ୟନ୍ତ ଚିନ୍ତାକୁଳ ହେଲେ । ଦୈବାତ୍ ରାଜପୁରୋଧା ରାଜାଙ୍କର ଚିନ୍ତାର କାରଣ ଅବଗତ ହୋଇ ରାଜାଙ୍କର ଜ୍ଞାତବ୍ୟ ତଥ୍ୟ ଗଣନାବଳରେ ଅନାୟାସବୋଧ୍ୟ ବୋଲି ନିବେଦନ କଲେ । ପ୍ରକୃତରେ ପୁରୋଧା ଜ୍ୟୋତିର୍ବିଦ୍ୟାରେ ତ୍ରିକାଳଦର୍ଶୀ । ତାହାଙ୍କ ପକ୍ଷରେ ଏ ସମସ୍ୟା ଅତି ଅକିଞ୍ଚିତ୍କର । ତେଣୁ ସେ ବିଦ୍ୟା ପ୍ରଭାବରେ ମିହିରଙ୍କ କୁଳଗୋତ୍ର ନିର୍ଣ୍ଣୟ କରି ପ୍ରକାଶ କଲେ । ରାଜା ବହୁଦିନରୁ ବାଞ୍ଛିତ ଜ୍ଞାତବ୍ୟ ତଥ୍ୟ ସକଳ ଅବଗତ ହୋଇ ଯତ୍ପରୋନାସ୍ତି ଆହ୍ଲାଦିତ ହେଲେ ଏବଂ ପୁରୋଧା ମଧ୍ୟ ରାଜ ପ୍ରଦତ୍ତ ଉପହାର ଯୋଗେ ପୁରସ୍କୃତ ହେଲେ । କେବଳ ଏତିକି ନୁହେଁ, ଏଥିନିମନ୍ତେ ବିରାଟ ମହୋତ୍ସବର ଆୟୋଜନ ମଧ୍ୟ ହେଲା ।



# ସପ୍ତମ ପରିଚ୍ଛେଦ ।

ସିଂହଳ ରାଜଧାନୀର ଅନତିଦୂରରେ ଏକ ନିବିଡ଼ ଅରଣ୍ୟ ବିସ୍ତୃତ । ତାହା ବ୍ୟାଘ୍ର, ଭଲ୍ଲୁକ ପ୍ରଭୃତି ହିଂସ୍ର ଜନ୍ତୁମାନଙ୍କ ଯୋଗେ ଭୟଙ୍କର ଏବଂ ମୃଗ ମୟୂର ପ୍ରଭୃତିଙ୍କ ଯୋଗେ ରମଣୀୟ । ସେହି ଅରଣ୍ୟ ଶାଳ, ତାଳ, ତମାଳ, ଅଶନ, ଅର୍ଜୁନ ପ୍ରଭୃତି ପାଦପମାନଙ୍କର ଘନ ସନ୍ନିବେଶ ହେତୁରୁ ସ୍ନିଗ୍ଧ ଏବଂ ସୁଶୀତଳ । ଅରଣ୍ୟର ମଧ୍ୟଦେଶରେ ନାନାଲତାଦ୍ରୁମସମାକୀର୍ଣ୍ଣ ସ୍ୱଚ୍ଛନିର୍ଝରସୁଶୋଭିତ ଗୋଟିଏ ଶୁଦ୍ର ପର୍ବତ ବିଦ୍ୟମାନ । ସେହି ପର୍ବତର ଶିଖର ପ୍ରଦେଶରେ ଶୈଳେଶ୍ୱର ମହାଦେବଙ୍କର ଅଧିଷ୍ଠାନ । ପ୍ରାକୃତିକ ଦୃଶ୍ୟନିମନ୍ତେ ଅରଣ୍ୟ ପ୍ରସିଦ୍ଧ । ସେଥିରେ ପୁଣି ନିର୍ଝରଶୋଭିତ ପର୍ବତର ଅବସ୍ଥାନ ଥିଲେ, ତାହା ଅଧିକ ଚିତ୍ତାକର୍ଷକ ହେବା ସ୍ୱାଭାବିକ । ଅତି ରମଣୀୟ ଏବଂ ଦେବାଧିଷ୍ଠାନ ହେତୁ ପବିତ୍ର ଏହି ଶୈଳରେ ମହୋତ୍ସବ ହେବା ନିମନ୍ତେ ରାଜା ଶଶିଶେଖର ଆଦେଶ ଦେଲେ ।

ନିର୍ବାଚିତ ଦିବସରେ ଉତ୍ସବର ଉପକରଣ ସକଳ ରାଜଭୃତ୍ୟ ଏବଂ ରାଜକର୍ମଚାରୀମାନଙ୍କ ତତ୍ତ୍ୱାବଧାନରେ ଶ୍ରୀଶୈଳେଶ୍ୱରଙ୍କ ଆୟତନରେ ସ୍ତୂପୀଭୂତ ହେଲା । ରାଜଧାନୀର ସାମନ୍ତ, ନାଗରିକ ଏବଂ ପୁରବାସୀମାନେ ଉତ୍ସବ ଉପଲକ୍ଷେ ଉତ୍ସାହପ୍ରଫୁଲ୍ଲ ଚିତ୍ତରେ ଉତ୍ସବସ୍ଥଳକୁ ପ୍ରସ୍ଥାନ କଲେ । ଷମା ଏବଂ ମିହିର ମଧ୍ୟ ମୃଗୟୁ-ବେଶରେ ଧନୁଶର ହସ୍ତରେ ପ୍ରୋକ୍ତ ଅରଣ୍ୟକୁ ଯାତ୍ରା କଲେ । ଏଣେ ରାଜକନ୍ୟା ଷମାର ପଞ୍ଚଦଶ ସୂଚକ ଉତ୍ସବ, ଦ୍ୱିତୀୟତଃ

ତାହା ଦୁଣି ପ୍ରକୃତିର ସୁଷମାଭଣ୍ଡାର ଅରଣ୍ୟରେ ସମ୍ପାଦିତ ହେବ। ସୁତରାଂ ଉତ୍ସବଯାତ୍ରୀ ମାନଙ୍କର ଆନନ୍ଦ ଏବଂ ଉତ୍ସାହ ସୀମାଅତିକ୍ରମ କରିଉଠିଲା। ରାଜଧାନୀର ଆବାଳବୃଦ୍ଧବନିତା ଆନନ୍ଦରେ ମଗ୍ନ ହେଲେ ସତ, କିନ୍ତୁ ହତଭାଗ୍ୟ ବିଭ୍ରାଙ୍ଗ ଘୋର ବିଷାଦରେ ଜୀବନ୍ମୃତ। ଏହି ଉତ୍ସବ ଯୋଗୁଁ ଆଜି ତାହାର ପ୍ରାଣସଂକଟ ଉପସ୍ଥିତ। ଆଜି ସେ ବୁଝିଛି—କ୍ଷମାଲାଭ ତାହା ପକ୍ଷରେ ଅସମ୍ଭବ। ଆଜିଠାରୁ ତାହାର ସକଳ ଆଶାଭରସା ବିଲୁପ୍ତ। ଏବଂଭୂତ ଚିନ୍ତାରେ ତାହାର କରଚରଣ ସ୍ଥିର, ମୁଖମଣ୍ଡଳ ମଳିନ, ମନ ସ୍ତବ୍ଧ ଏବଂ ଆହାର ନିଦ୍ରା ତାହାପକ୍ଷରେ ବିଷତୁଲ୍ୟ। ସେ ଉପାୟାନ୍ତର ନଦେଖି ଏହି ଦୁର୍ବିଷହ ଯାତନାରୁ ଉଦ୍ଧାର ଲାଭ କରିବା ନିମନ୍ତେ ଆତ୍ମହତ୍ୟା ସର୍ବଥା କରଣୀୟ ବୋଲି ଚିନ୍ତା କରୁଅଛି, ଏମନ୍ତ ସମୟରେ ତାହାର ଜଣେ ବିଶ୍ୱସ୍ତ ଭୃତ୍ୟ ସମ୍ମୁଖରେ ଉପସ୍ଥିତ ହେଲା। ଭୃତ୍ୟ ପ୍ରଭୁର ଈଦୃଶ ଶୋଚନୀୟ ଅବସ୍ଥା ଅବଲୋକନ କରି ସ୍ତମ୍ଭିତ ହୋଇ ଜିଜ୍ଞାସା କଲା—ପ୍ରଭୋ! ଆପଣଙ୍କର ଏପରି ଅବସ୍ଥା କାହିଁକି? ପ୍ରଭୁ ଉତ୍ତର ଦେଲେ—ଏ କି ଅବସ୍ଥା? ଅଳ୍ପକ୍ଷଣପରେ ଏତଦପେକ୍ଷା ଭୀଷଣ ଅବସ୍ଥା ଅବଶ୍ୟ ସଂଘଟିତ ହେବ।

ଭୃତ୍ୟ ପ୍ରଭୁଙ୍କ ଠାରୁ ଭୟାବହ ଉତ୍ତର ଲାଭକରି ସନ୍ତ୍ରସ୍ତ ହୋଇ ପୁନର୍ଜିଜ୍ଞାସା କରିବାରେ ପ୍ରଭୁ କହିଲେ—ତୁ ଜାଣୁ କ୍ଷମା ପରମା ସୁନ୍ଦରୀ ଏବଂ ପରମପଣ୍ଡିତା। କୌଳିକ ପ୍ରଥାନୁସାରେ କ୍ଷମା ମୋହରହିଁ ବିବାହ୍ୟ। କିନ୍ତୁ ଆଜି ଶୈଳେଶ୍ୱରଙ୍କ ଆସ୍ଥାନରେ ଯେଉଁ ମହୋତ୍ସବର ଆୟୋଜନ ହେଉଅଛି, ତାହା କେବଳ କ୍ଷମା ସହିତ ମିହିରର ପରିଣୟ ଉଦ୍ଦେଶ୍ୟରେ। ସୁତରାଂ

ଷମାଲୀର ବଶ୍ୟତାରେ ମୁଁ ଜୀବନରେ ନିରାଶ । ଏପରି ଅବସ୍ଥାରେ ଏ ନିରର୍ଥକ ଜୀବନ ଘେନି ବଞ୍ଚି ରହିବା ଅପେକ୍ଷା ଆତ୍ମହତ୍ୟା ସର୍ବଥା ଶ୍ରେୟସ୍କର ନୁହେଁ କି ?

ଦୁରନ୍ତ ଭୃତ୍ୟ ଦୁରନ୍ତ ପ୍ରଭୁର ଦୀନୋକ୍ତିରେ 'ଦ୍ରବୀଭୂତ' ହୋଇ ନିବେଦନ କଲା—ପ୍ରଭୋ ! ଷମାଲୀଉପରେ ଯଦି ମିହିର ଏକମାତ୍ର ଅନ୍ତରାୟ, ତାହାହେଲେ ତାହାର ନିରାକରଣ କରିପାରିଲେତ ଆପଣଙ୍କର ସୁଖର ପଥ ନିଷ୍କଣ୍ଟକ ହୋଇଯିବ । ସୁତରାଂ ଏ ନିରର୍ଥକ ଚିନ୍ତା କାହିଁକି ? ଆଦେଶ ହେଲେ ଆପଣଙ୍କର ଏ ଅଧମଭୃତ୍ୟ ଏହା ଅନାୟାସରେ ସାଧନ କରିପାରେ । ଆପଣ ଯଦି ମିହିରର ସଂହାର ନିମନ୍ତେ ସର୍ବଥା ପ୍ରସ୍ତୁତ ହୋଇ ପାରନ୍ତି, ତାହାହେଲେ ଏ ଭୃତ୍ୟ ମିହିରକୁ ଆପଣଙ୍କ ହସ୍ତରେ ସମର୍ପଣ କରିବାକୁ ପ୍ରସ୍ତୁତ ଅଛି । ମ୍ରିୟମାଣ ପ୍ରଭୁ ଭୃତ୍ୟର ଈଦୃଶ ଅନୁକୂଳ ପ୍ରସ୍ତାବରେ ପୁଲକିତ ହୋଇ ଉତ୍ତର ଦେଲେ—ଏହା ଯଦି ତୁ ସାଧନ କରିପାରୁ, ତାହାହେଲେ ତୋହରି ଯୋଗୁଁ ମୋର ପୁନର୍ଜନ୍ମ ଲାଭ ହେବ ଏବଂ ଏଥିଯୋଗୁଁ ଯେ ତୋର ସହସ୍ର ସ୍ୱର୍ଣ୍ଣମୁଦ୍ରା ପୁରସ୍କାରରୂପେ ପ୍ରାପ୍ୟ ହେବ, ଏହା କହିବା ବାହୁଲ୍ୟ ମାତ୍ର ।

ଅନନ୍ତର ଭୃତ୍ୟ ପ୍ରଭୁସହିତ ଶୈଳେଶ୍ୱରବିପିନକୁ ଯାତ୍ରା କରି ସେଠାରେ କୌଣସି ପର୍ବତର ଶିଖରଭାଗରେ ପ୍ରଭୁଙ୍କୁ ମିହିର ହତ୍ୟାନିମନ୍ତେ ସଶସ୍ତ୍ରଭାବରେ ବସାଇଦେଇ ସ୍ୱୟଂ ମିହିରକୁ ଆହୂତ କରିବା ଅଭିପ୍ରାୟରେ ଲୁକ୍କାୟିତଭାବରେ ଅରଣ୍ୟରେ ଇତସ୍ତତଃ ଅନୁସନ୍ଧାନ କରିବାକୁ ଲାଗିଲା ।



# ଅଷ୍ଟମ ପରିଚ୍ଛେଦ ।

ଉତ୍ସବ ଉପଲକ୍ଷରେ କ୍ଷମା ଏବଂ ମିହିର ଅରଣ୍ୟରେ ଉପସ୍ଥିତ ହୋଇ ସବିଶେଷ ନୈସର୍ଗିକଦୃଶ୍ୟଦର୍ଶନଲାଳସାରେ ସ୍ଥାନେ ସ୍ଥାନେ ଇତସ୍ତତଃ ବିହାର କରିବାକୁ ଲାଗିଲେ । ବନମାନଙ୍କରେ ପ୍ରକୃତିଦେବୀଙ୍କ ଚିର ଲୀଳାସ୍ଥଳ । ଶୈଳେଶ୍ୱର— ବିପିନ ବିଶାଳ ଏବଂ ଜନଦୁର୍ଗମ । ସୁତରାଂ ତାହାର ଦୃଶ୍ୟ ଅସାଧାରଣ । ମୃଗୟୁବେଶୀ ଧନୁଶରହସ୍ତ ପ୍ରେମିକ ପ୍ରେମିକା ଦୁହେଁ ଶଂସିତ ଅରଣ୍ୟ ମଧ୍ୟରେ ସ୍ଥାନେ ସ୍ଥାନେ ପୁଷ୍ପିତବଲ୍ଲରୀପରିଲଙ୍ଘିତ ଦ୍ରୁମାବଳୀର ଅନିର୍ବଚନୀୟ ହାବଭାବ, ପ୍ରେମାତୁର ମୃଗ ମୃଗୀ ଯୂଥର ଲମ୍ଫପ୍ରଧାନ ଦ୍ରୁତଧାବନ, ଉତ୍ଫୁଲ୍ଲ ମନୋରମ ମୟୂରର ମୟୂରୀ ସହ ଉନ୍ମାଦନୃତ୍ୟ, କଳକଣ୍ଠ କୋକିଳକୋକିଳାର ମଧୁସ୍ରାବୀ କେକାଧ୍ୱନି, ବିରହାତୁର କପୋତଯୁଗଳର କରୁଣକୂଜନ, କାନନଚୁମ୍ବିତ ଶ୍ୟାମଳୁଶ୍ରୀ ଶୈଳବୃନ୍ଦର ମୋହନ ମାଧୁରୀ ଏବଂ ସମୁଦ୍ରସଙ୍ଗମାତୁର କଳହଂସିଣୀ ନିର୍ଝରିଣୀର ଆତୁର ଗମନ ପ୍ରଭୃତି ଶ୍ରୁତଦୃଷ୍ଟିଭୋଗ୍ୟ ସୌନ୍ଦର୍ଯ୍ୟରାଜିର ଭଙ୍ଗୀତରେ ଅନନ୍ୟାନ୍ୟ ଅନୁପ୍ରାଣିତ ହୋଇ କୃତାର୍ଥ ହେଉଥିଲେ, ଏମନ୍ତ ସମୟରେ ସେହି ଜଙ୍ଗଲରୁ କେତେଙ୍କର ମାୟାବୀ ଦୃଷ୍ଟ୍ୟ ସେ ଦୁହିଁଙ୍କର ସନ୍ଧାନ ଲାଭ କରି ଅଦୂରବର୍ତ୍ତୀ ବୃକ୍ଷଲତା ମାନଙ୍କର ଅନ୍ତରାଳରେ ପ୍ରଚ୍ଛନ୍ନ ହୋଇ ଅନୁସରଣ କରିବାକୁ ଲାଗିଲା । ବନବିହାର ଭଳିଲେ ଅପାର୍ଥିବ ସ୍ନେହାସକ୍ତ ମୃଗୟୁଦ୍ୱୟ ଏହି ଆକସ୍ମିକ ଅତ୍ୟାଚାରକୁ ଧ୍ୱଂସ ପ୍ରାୟ କରି ବେଶୀ ଦୂର ବନବିଥୀ ମାନଙ୍କର

# ଶୋଣା

ଆର୍ତ୍ତନାଦ ଅନେକଙ୍କ ତାହାର ଉଦ୍ଧାର ନିମନ୍ତେ ବ୍ୟଗ୍ର କରାଇ ପକାଇଲେ ।

ଷମା ଏବଂ ମିହିର ଉଭୟ ବନ୍ଧୁ ଏବଂ ପରଦୁଃଖ—ମୋଚନ-ତତ୍ପର । ଦୁହେଁ ଆର୍ତ୍ତର ଉଦ୍ଧାର ନିମନ୍ତେ ଶବ୍ଦକୁ ଲକ୍ଷ୍ୟ କରି ଧନୁଃଶରହସ୍ତରେ ଲକ୍ଷ୍ୟସ୍ଥଳକୁ ଦ୍ରୁତବେଗରେ ଧାବମାନ ହେଲେ । କିନ୍ତୁ ସେ ଦୁହେଁ ଲକ୍ଷ୍ୟସ୍ଥଳରେ ଉପସ୍ଥିତ ହେବା ପୂର୍ବରୁ ଛଦ୍ମବେଶୀ ଭୃତ୍ୟ ସ୍ଥାନାନ୍ତରିତ ହୋଇ ଅନ୍ୟତ୍ର ଆର୍ତ୍ତନାଦ କଲା । ସୁତରାଂ ସେ ଦୁହେଁ ଦ୍ୱିତୀୟ ଲକ୍ଷ୍ୟସ୍ଥଳକୁ ପ୍ରଧାବିତ ହେଲେ । ମାତ୍ର ଆର୍ତ୍ତନାଦ ପୂର୍ବବତ୍ ଅନ୍ୟତ୍ର ଶ୍ରୁତିଗୋଚର ହେଲା । ତଥାପି ଷମା ଏବଂ ମିହିର ନିଶ୍ଚେଷ୍ଟ ନ ହୋଇ ଶବ୍ଦର ସ୍ଥଳକୁ ଲକ୍ଷ୍ୟ କରିବାରେ ତ୍ରୁଟି କଲେନାହିଁ । ପରିଶେଷରେ ସେହି କୃତ୍ରିମ ଆର୍ତ୍ତନାଦୀ ନିଜ ପ୍ରଭୁର ଅବସ୍ଥିତିପର୍ବତର ଏକପାର୍ଶ୍ୱରେ ଆର୍ତ୍ତନାଦ କରିବାକୁ ଲାଗିଲା । ପର୍ବତ ପ୍ରତିବନ୍ଧକ ଯୋଗେ ସେହି ଶବ୍ଦ ପ୍ରତିହତ ହୋଇ ପର୍ବତର ଦୁଇପାର୍ଶ୍ୱରୁ ଶ୍ରୁତିଗୋଚର ହେଲା । ଷମା ଏବଂ ମିହିର ବିଭିନ୍ନଦିଗରୁ ଶବ୍ଦର ଉତ୍ପତ୍ତି ଅନୁଭବ କରି ଦୁହେଁ ପୃଥକ୍ ଭାବରେ ବିଭିନ୍ନଦିଗରେ ପ୍ରଧାବିତ ହେଲେ । କୌଶଳୀ ଛଦ୍ମବେଶୀ ମିହିରକୁ ଷମାଠାରୁ ବିଚ୍ଛିନ୍ନ ହେବାର ଜାଣି ଏହି ସୁଯୋଗରେ କେବଳ ମିହିରର ସମ୍ମୁଖରେ ଚିତ୍କାର କରିକରି ତାହାକୁ ନିଜ ପ୍ରଭୁର ଅବସ୍ଥାନ ସ୍ଥଳକୁ ନେଇଗଲା ।

ଉକ୍ତ ସମୟରେ ମିହିର ପର୍ବତର ଶିଖର ଦେଶରେ ଉପସ୍ଥିତ । ଛଦ୍ମବେଶୀ ଭୃତ୍ୟ କେଉଁଆଡେ ଲୁକ୍କାୟିତ,

## ଶନା॥

ଅନ୍ତିନାଥ ମଧ୍ୟ ଅଲକ୍ଷ୍ୟ। ନିହାର ଇତସ୍ତତଃ ହୋଇ ସାମାନ୍ୟ ଅଗ୍ରସର ହେବାରେ ଦେଖିଲା—ତାହାର ପ୍ରକାଶ୍ୟବୈରୀ ସେହି ନବୋଧ ବଜ୍ରାଙ୍କ ତାହାର ହତ୍ୟାନିମନ୍ତେ ଶାଣିତଛୁରିକା ହସ୍ତରେ ସମୁଦ୍ୟତ ॥

ଜିଘାଂସୁ ବଜ୍ରାଙ୍କ ନିଜର ମାନସିକ ଅଭିଳାଷ କଣ୍ଟକ ନିହାରକୁ ସମ୍ମୁଖରେ ସନ୍ଦର୍ଶନ କରିବାମାତ୍ରେ ମହୋନ୍ମତ୍ତ ଶାର୍ଦ୍ଦୂଳ ସଦୃଶ ଗର୍ଜ୍ଜନ କରି ତାହା ନିକଟକୁ ପ୍ରଧାବିତ ହେଲା। ଏବଂ ହତ୍ୟାନିମନ୍ତେ ଉଦ୍ୟତ ହୋଇ କର୍କଶକଣ୍ଠରେ କହିଲା—ଅଜ୍ଞାତକୁଳଶୀଳ, ପରାନ୍ନପାଳିତ !! ତୋର ପୁଣି ଏତେ ଆସ୍ପର୍ଦ୍ଧା। ଯେ ତୁ ମୋର ଭୋଗ୍ୟର ଅଧିକାରୀ ହେବାକୁ ଲାଳାୟିତ ? ଦେଖିବୁ ବର୍ତ୍ତମାନ ଏହି ଶାଣିତ ଛୁରିକାରେ ତୋର ଭୋଗଲାଳସା ଚରିତାର୍ଥ ହେବ। ବୁଝିରଖ, ଏହାହିଁ ତୋହର ଉଦ୍ଭ୍ରାନ୍ତପ୍ରେମର ସମୁଚିତ ପରିଣତି। ପାଷଣ୍ଡ !! ନରାଧମ !! ଯେଉଁ ପ୍ରେମରେ ଆତ୍ମବିସ୍ମୃତ ହୋଇ ସୁଖସ୍ୱପ୍ନରେ ମଗ୍ନ ହୋଇଥିଲୁ, ଏବେ ସେହି ପ୍ରେମକୁ ସ୍ମରଣ କର। ସେ ପ୍ରେମ ଏବେ ତୋତେ ରକ୍ଷା କରୁ ॥

କୋମଳପ୍ରାଣ ନିହାର ହଠାତ୍ ଜିଘାଂସୁର ଏବମ୍ବିଧ କର୍କଶ ଧିକ୍କାର ଶୁଣିସୁଦ୍ଧା ନିରସ୍ତ ନହୋଇ ନିଜର କର୍ତ୍ତବ୍ୟ-ଧାରଣାରେ ମନୋଯୋଗୀ ହେଲା ॥



# ନବମ ପରିଚ୍ଛେଦ ।

କ୍ଷମା ମିହିରଠାରୁ ବିଚ୍ଛିନ୍ନ ହୋଇ ଆକ୍ରାନ୍ତ ଲୋକଙ୍କ ଅନୁସନ୍ଧାନରେ ବ୍ୟସ୍ତଥିଲା । ଯେତେବେଳେ ଦେଖିଲା— ଆଉ ଆର୍ତ୍ତନାଦ ନାହିଁ, ସେତେବେଳେ ସେ ଅନୁସନ୍ଧାନରୁ ନିବୃତ୍ତ ହେଲା । ବର୍ତ୍ତମାନ ତାହାର ମିହିର ଏକାନ୍ତ ଲୋଡ଼ା । ଅନନୁଲଂଘନୀୟ କାରଣରୁ ସିନା ସେ କିୟତ୍‌କାଳ ନିମନ୍ତେ ମିହିରଠାରୁ ବିଚ୍ଛିନ୍ନ ହେବାକୁ ବାଧ୍ୟ ହୋଇଥିଲା ; କିନ୍ତୁ ଗୋଟିଏ ମାତ୍ର ମୁହୂର୍ତ୍ତର ବିଚ୍ଛେଦ ତାହା ପକ୍ଷରେ ଘୋର ଆତଙ୍କର କାରଣ ନୁହେଁକି ? ମିହିର ତାହାର ଏକାନ୍ତ ଲୋଡ଼ା, ସତ୍ୟ, କିନ୍ତୁ ତାହାର ଅବସ୍ଥାନତ କ୍ଷମାର ଅଗୋଚର । ସେଥିରେ ପୁଣି ସେ ଶତ୍ରୁକର୍ତ୍ତୃକ ଜୀବନସଙ୍କଟରେ ଉପସ୍ଥିତ, ଏହା ମଧ୍ୟ କ୍ଷମାର ଅଗୋଚର ।

କ୍ଷମା ମିହିରର କୌଣସି ସନ୍ଧାନ ଲାଭ କରି ନ ପାରି ଅଧୀର ହୋଇ ସେହି ଅରଣ୍ୟ ମଧ୍ୟରେ ଗଣନାରମ୍ଭ କଲା । ଗଣନାରୁ ପ୍ରତୀତ ହେଲା—ସେ ବର୍ତ୍ତମାନ ପୂର୍ବଦିଗରେ, ସେ ପୁଣି ପର୍ବତ ଉପରେ, ଅଧିକନ୍ତୁ ଯେତେବେଳେ ଗଣିଲା—ମିହିର ବର୍ତ୍ତମାନ ଶତ୍ରୁଦ୍ୱାରା ଆକ୍ରାନ୍ତ ଏବଂ ପ୍ରାଣସଙ୍କଟରେ ଉପସ୍ଥିତ, ସେତେବେଳେ କ୍ଷମାର ଆପାଦ ମସ୍ତକ ଥରିଉଠିଲା, ପ୍ରତ୍ୟେକ ଶିରାପ୍ରଶିରାରେ ଉଷ୍ଣରକ୍ତ ଖରବେଗରେ ପ୍ରବାହିତ ହେଲା । ସେ କ୍ଷଣ ବିଳମ୍ବ ନକରି ଚୁମ୍ବକାକୃଷ୍ଟ ହୋଇ ବିଦ୍ୟୁଦ୍‌ବେଗରେ ମିହିର ନିକଟକୁ ପ୍ରଧାବିତ ହେଲା । ସେ ନିମେଷମାତ୍ରକେ ତାହା ନିକଟରେ

# କ୍ଷମା

ଉପସ୍ଥିତ ସୈନ୍ୟମାନେ ଦେଖିଲେ ଯେଉଁ ସମସ୍ତ ମିହିର ବୀରତା ଓ ପ୍ରେମରେ ମୁଗ୍ଧ, ବର୍ତ୍ତମାନ ସେ ରକ୍ଷାକର୍ତ୍ତୀ କନ୍ୟା କ୍ଷଣିକ ଛୁରିକାରେ ମିହିରର ବକ୍ଷ ବିଦ୍ଧକରିବାକୁ ଉଦ୍ୟତ, ସେତେବେଳେ ସେ ହଠାତ୍ ରଣଚଣ୍ଡୀମୂର୍ତ୍ତି ଧାରଣ କରି ଚଣ୍ଡବେଗରେ ସେହି ଘୃଣ୍ୟ ନରପିଶାଚର ସମ୍ମୁଖୀନ ହୋଇ କହିଲା—ପାପିଷ୍ଠ ! ପାଷଣ୍ଡ ! ବର୍ତ୍ତମାନ ଆତ୍ମସମ୍ବରଣ କର, ନଚେତ୍ ତୋହର ମୃତ୍ୟୁ ସୁନିଶ୍ଚିତ । ଏହିଦେଖ, ତୋର ମୃତ୍ୟୁଦେବତା ତୋର ସମ୍ମୁଖରେ ବିଦ୍ୟମାନ ! ମିହିର ଯେଉଁ କ୍ଷମାର ପ୍ରେମରେ ମୁଗ୍ଧ, ସେହି କ୍ଷମା ମୁହିଁ ବର୍ତ୍ତମାନ ତୋର ସମକ୍ଷରେ ତୋର ପ୍ରଳୟ ଦେବତାତୁଲ୍ୟ ଉପସ୍ଥିତ ! ଏହିକ୍ଷଣି ଦେଖିବୁ କ୍ଷମାର ପ୍ରଳୟ ତାଣ୍ଡବ, ପୁଣି ଦେଖିବୁ ମିହିରପ୍ରେମିକା ଏହି କ୍ଷମା କିପରି ତୋହର ଛୁରିକାରେ ତୋହର ଧ୍ୱଂସସାଧନ କରି ମିହିରକୁ ରକ୍ଷା କରିବ । କେବଳ ସେତିକି ନୁହେଁ, ଆଜି ଏହି ଶୁଭମୁହୂର୍ତ୍ତରେ ତୋହର ବୁକୁର ରକ୍ତକୁ ସିନ୍ଦୂର କରି କ୍ଷମା ମିହିର ସହିତ କିପରି ଗାନ୍ଧର୍ବ ବିବାହ କରିବ, ତାହା ମଧ୍ୟ ସମ୍ମୁଖରେ ଦେଖିବୁ । ତାହା ହେଲେ ବୁଝିବୁ ପ୍ରେମର ମହାତ୍ମ୍ୟ, ପ୍ରେମର ଶକ୍ତି । ଏହା କହି ପ୍ରତିହିଂସାପରାୟଣା ସେହିକ୍ଷମା ପୂର୍ବରୁ ମିହିର ନିମନ୍ତେ ଅଭିପ୍ରେତ ଛୁରିକାରେ ସେହି ଜଘନ୍ୟସୁର ବକ୍ଷସ୍ଥଳ ବିଦ୍ଧ କଲା ଏବଂ ସତ୍ୟ ସତ୍ୟ, ସେହି ପାଷଣ୍ଡ ମର୍ମନିଃସୃତ ରକ୍ତବିନ୍ଦୁ ଲଲାଟରେ ଧାରଣ କରି ମିହିର ସହିତ ଆବାଲ୍ୟ ଆକାଂକ୍ଷିତ ବିବାହ ସଂପାଦନ କଲା ।

କ୍ଷମା ଅବଳା, ସେ ପୁଣି ସମ୍ମୁଖରେ ଥିବା ଦୁଇ ବୀରଙ୍କୁ କେବଳ ସେତିକି ନୁହେଁ ସେ ନିଜ ହସ୍ତରୁ ଛୁରିକା ଛଡ଼ାଇ

ହତ୍ୟାର ଉପକ୍ରମ କରୁଛି, ପରଶେଷରେ ହତ୍ୟାହିଁ ସାଧନ କରନ୍ତି । ରାଜଭ୍ରାତୁଷ୍ପୁତ୍ର ପୁରୁଷ, ପୁଣି ପାଷଣ୍ଡ, ନାରୀଠାରୁ ନିଶ୍ଚୟ ବଳଶାଳୀ, ନର ହତ୍ୟା ମଧ୍ୟ ତାହା ପକ୍ଷରେ ଅକର୍ଷିତକର ; କନୁ ସେ କଣ୍ଟି ମାନ ପ୍ରତିବାଦ, ପ୍ରତିକାର ନକରି କଟରି ଏସମସ୍ତ ସହ୍ୟ କଲା, ଏପ୍ରଶ୍ନ ସ୍ୱତଃ ଉଦିତ ହୁଏ । ତାହାର ଏକମାତ୍ର କାରଣ—ସେ ପିନା ଶମା ପ୍ରତି ଅସକ୍ତ ; ଏମନ୍ତ କି ତାହା ନିମନ୍ତେ ପ୍ରାଣପର୍ଯ୍ୟନ୍ତ ପଣ କରିବାକୁ ପ୍ରସ୍ତୁତ । କିନ୍ତୁ ଶମାର.ତ ତାହା ପ୍ରତି ଅସକ୍ତିର ଗନ୍ଧ ସୁଦ୍ଧା ନଥିଲା । ବରଂ ସେ ତାହାର ଏକାନ୍ତ ଘୃଣାର ପାତ୍ର । ସୁତରାଂ ଏପରି ସ୍ଥଳରେ ବଜ୍ରାଙ୍ଗର ଶମା ପ୍ରତି ହତ୍ୟାପ୍ରବୃତ୍ତି ଯେପରି ଅସମ୍ଭବ, ଶମାର ବଜ୍ରାଙ୍ଗହତ୍ୟା ସେହିପରି ସମ୍ଭବ । ଏହିଠାରେହିଁ ପ୍ରେମର ଜୟ ଏବଂ ପାଶବ ପ୍ରବୃତ୍ତିର ପରାଭବ ପରିସ୍ଫୁଟ ।



# ଦଶମ ପରିଚ୍ଛେଦ

ଘଟନା ସ୍ରୋତରେ ଭାସିଲେ ମନର ଗତି ଭଳହୁଏ । କ୍ଷମାଙ୍କୁ ଲାଭ କରିବା ଆଶାରେ ମିହିରର ମନର୍ଷ ସ୍ଥଳରେ ଏ ପର୍ଯ୍ୟନ୍ତ ଅବ୍ୟାହତ ଥିଲା । ତାହାର ମୁଖ୍ୟଲକ୍ଷ୍ୟ କ୍ଷମାଲାଭ ବନ୍ଧୁପ୍ରେରଣାରେ ସମାହିତ ହୋଇଗଲା । ସୁତରାଂ ତାହାର ଆଜ ସେ ଆବେଗ ନାହିଁ । ଦ୍ୱିତୀୟତଃ ବଜ୍ରାଙ୍କ ହତ୍ୟାରୂପକ ଯେଉଁ ବୀଭତ୍ସ କାଣ୍ଡ ସଂଘଟିତ ହୋଇଗଲା; ସେଥିରେ ଯେ କୌଣସି ଲୋକର ଭାବାନ୍ତର ଅବଶ୍ୟମ୍ଭାବୀ । ତେଣିକି ବେଳକୁ କେଜାଣି କାହିଁକି ମିହିରର ଜନ୍ମଭୂମି ଦର୍ଶନ ସ୍ପୃହା ମନରେ ଜାଗରିତ ହୋଇ ଉଠିଲା । ଏଣୁ ମିହିର ସିଂହଳପ୍ରତି ବୀତସ୍ପୃହ ହୋଇ ଉଜ୍ଜୟିନୀ ଯାତ୍ରା ନିମନ୍ତେ ବ୍ରତ ହୋଇପଡିଲା । ଯାତ୍ରା ନିମନ୍ତେ ଏ ଶୁଭବେଳ ନିର୍ଣ୍ଣୟ କରୁ କରୁ ଦୈବାତ ଅଳ୍ପ ସମୟ ନିମନ୍ତେ ଶୁଭବେଳାର ସନ୍ଧାନ ମଧ୍ୟ ମିଳିଗଲା । ତେଣୁ ମିହିର ଶୀଘ୍ର ଯାତ୍ରା ନିମନ୍ତେ ବ୍ୟଗ୍ର ହୋଇ ପଡିଲା ।

କ୍ଷମା ମିହିରର ଏ ନବୋଦ୍ୟମ ଦେଖି ତାହାର ସହଯାତ୍ରୀ ହେବାକୁ ବାଧ୍ୟ ହେଲା । କାରଣ ସେ ଗାନ୍ଧର୍ବ ବିଧିରେ ତାହାର ସହଧର୍ମିଣୀ ହୋଇସାରିଛି । ଏଣିକି କ୍ଷମାର ସ୍ୱାତନ୍ତ୍ର୍ୟ ନାହିଁ, ସେ ସର୍ବଥା ପତିର ଅନୁଗତା । ଫଳତଃ ନବପରିଣୀତା ଦମ୍ପତୀ ଉଜ୍ଜୟିନୀ ଯାତ୍ରା ନିମନ୍ତେ ତତ୍ପର ହେଲେ । କେବଳ ଶିକ୍ଷ୍ୟାନ୍ତରୁ ରାଜପୁରୋଧା ଏବଂ ପିତାମାତାଙ୍କଠାରୁ ବିଦାୟ ଗ୍ରହଣ କରି ନଥିବାରୁ ସେ ଦୁହିଙ୍କୁ ଶୈଳେଶ୍ୱର ଆୟତନକୁ ଆସିବାକୁ ହେଲା, ନଚେତ୍

ସେହିଠାରୁ ଉଜ୍ଜୟିନୀ ପ୍ରସ୍ଥାନ ହୋଇଥାନ୍ତା । ଭଗବାନ୍ କାହାନିମନ୍ତେ କି ଆୟୋଜନ କରି ରଖନ୍ତି, ତାହା ତାହାଙ୍କୁହିଁ ଗୋଚର । ମିହିରଙ୍କ ମନରେ ହଠାତ୍ ଏ ପ୍ରେରଣା କାହିଁକି ? ଏହାଦ୍ୱାରା ପରିଣାମ କଣ ? ଏହା କିଏ କହିବ ?

ଉତ୍ସବକ୍ଷେତ୍ରରେ ରାଜା ଏବଂ ରାଣୀଙ୍କ ବ୍ୟତୀତ ଅନ୍ୟ ସମସ୍ତେ ଉପସ୍ଥିତ । ଉତ୍ସବର ଆୟୋଜନ ତୀବ୍ରବେଗରେ ଚାଲିଛି । ଖିଆପିଆ, ନାଚ ତାମସା, ଖେଳକୌତୁକ ପ୍ରଭୃତି ନାନା ଆନନ୍ଦଜନକ ବ୍ୟାପାରରେ ଉତ୍ସବକ୍ଷେତ୍ର ହସିଉଠୁଛି । କେବଳ ରାଜା ଏବଂ ରାଣୀଙ୍କର ଉପସ୍ଥିତିରେ ତାହା ପୂର୍ଣ୍ଣାଙ୍ଗ ହେବ ବୋଲି ସମସ୍ତେ ପ୍ରତୀକ୍ଷା କରି ରହିଅଛନ୍ତି ।

ରାଜପୁରୋଧା ଉତ୍ସବସ୍ଥାନରେ ଉପସ୍ଥିତ ହେବା ସମୟରୁ କ୍ଷମା ଏବଂ ମିହିରଙ୍କୁ ଦେଖି ନପାରି ବହୁସମୟପର୍ଯ୍ୟନ୍ତ ସେ ଦୁହିଙ୍କର ଆଗମନ ପ୍ରତୀକ୍ଷା କଲେ । ତଥାପି ବିଳମ୍ବ ହେବାରୁ ସେ ଦୁହିଙ୍କର ଗତିବିଧି ଜାଣିବା ନିମନ୍ତେ ଗଣନା କଲେ । ସେ ଗଣନା-ବଳରେ ସ୍ଥଳସ୍ଥଳୀ ଦୁହିଙ୍କର ଆକସ୍ମିକ ଆରଣ୍ୟ ଘଟନା ଜାଣି ପାରିଅଛନ୍ତି । କିନ୍ତୁ କାଲପରେ ନବଦମ୍ପତି ଗୁରୁଦେବଙ୍କ ନିକଟରେ ଉପସ୍ଥିତହୋଇ ହଠାତ୍ ଉଜ୍ଜୟିନୀ ଯାତ୍ରା ନିମନ୍ତେ ବିଦାୟ ପ୍ରାର୍ଥନା କଲେ । ଏଥିରେ ଗୁରୁଦେବ ସ୍ତମ୍ଭିତ ହୋଇ କହିଲେ—ଏକି ଅସମ୍ଭବ କଥା ; ମୁଁ ଜାଣେ ଅରଣ୍ୟ ମଧ୍ୟରେ ତୁମ୍ଭ ଦୁହିଙ୍କର ଯେଉଁ ଶୁଭଦୃଷ୍ଟି ହୋଇ ଯାଇ ଅଛି । ତଥାପି ଏ ଉତ୍ସବତ ତୁମ୍ଭମାନଙ୍କ ପାଇଁ ? ତାହାତ ଏପର୍ଯ୍ୟନ୍ତ ସମ୍ପନ୍ନ ହୋଇନାହିଁ । ଏହାର ଅଳ୍ପଦିନପରେ ଦୁହିଁ ଶୁଭ ପରିଣୟ ସମାରୋହରେ ସମାହିତ ହେବାର କଥା । ଏ ସବୁ

# ଶେଷ

ଶେଷ ନହେଉଣୁ ତୁମ୍ଭେ ପ୍ରଳାପତୁଲ୍ୟ ଏପରି କି ପ୍ରସ୍ତାବ ଅଗତ୍ଯା କରୁଅଛ ମୁଁ ବୁଝିପାରୁନାହିଁ, ମନ ସ୍ଥିର କର, ଉଜ୍ଜୟିନୀ ଯାତ୍ରା ବର୍ତ୍ତମାନ ଭୁଲିଯାଅ ।

ଗୁରୁଦେବ ନାନା ଉପଦେଶ ନାନା ପରାମର୍ଶ ଦେଲେହେଁ ମିହିରଙ୍କ ମନର କୌଣସି ପରିବର୍ତ୍ତନ ହେଲା ନାହିଁ । ସେ କ୍ଷଣ ବିଳମ୍ବ ନକରି ଯାତ୍ରା କରିବା ନିମନ୍ତେ ବାରମ୍ବାର ପ୍ରାର୍ଥନା କଲା । ପୁରୋଧା ଗଭ୍ୟନ୍ତର ନଦେଖି ରାଜା ଏବଂ ରାଣୀଙ୍କର ଆଗମନ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ଅନୁରୋଧ କଲେ । ତଥାପି ମିହିର ଏଥିରେ ସନ୍ତୁଷ୍ଟ ନହୋଇ କହିଲା—ଆପଣଙ୍କଠାରୁ ବିଦାୟ ନେବା ପରେ ଯେବେ ରାଜାଏବଂ ରାଣୀ ଉପସ୍ଥିତ ହୁଅନ୍ତି ତେବେ ଉତ୍ତମ ନଚେତ୍ ଅପେକ୍ଷା ନକରି ଅବଶ୍ୟ ଯାତ୍ରା କରିବୁ ।

ଗୁରୁଦେବଙ୍କଠାରୁ ବିଦାୟ ଉଦ୍ଦେଶ୍ୟରେ ମିହିର କହିଲା— ଆପଣ ଆମ୍ଭର ଗୁରୁଦେବ । ଯେଉଁ ଗୁରୁଙ୍କଠାରୁ ଗୋଟିଏ ମାତ୍ର ଅକ୍ଷର ଶିକ୍ଷା କରି ଥାଉଥାଏ, ତାହାଙ୍କର ଋଣ ପରିଶୋଧ ଅସମ୍ଭବ, ଆପଣ ତାହା ନୁହନ୍ତି, ଆପଣ ଆମ୍ଭମାନଙ୍କୁ ଆଲୋକ ପ୍ରଦାନ କରିଅଛନ୍ତି ଏବଂ ଆପଣଙ୍କ ଯୋଗେ ଆମ୍ଭେ ମନୁଷ୍ୟ ହୋଇ ପାରିଅଛୁ । ଗୁରୁ ସର୍ବଦା ଗୁରୁ, ଗୁରୁଋଣ କେହିକେବେ ପରିଶୋଧ କରି ପାରିନାହିଁ । ଆମ୍ଭେ ଆପଣଙ୍କଠାରେ ଜନ୍ମ ଜନ୍ମାନ୍ତର ଋଣୀ । ସେ ଋଣରୁ ମୁକ୍ତିଲାଭ ଜୀବନରେ ଅସମ୍ଭବ । ଏପରି ଋଣୀ ହୋଇସୁଦ୍ଧା ପୁନଶ୍ଚ ଭିକ୍ଷା କରୁ— ଆମ୍ଭେ ଦୁହେଁ ଯେପରି କେବେହେଲେ ଆପଣଙ୍କର ସେହି ଅନୁପମ ସ୍ନେହରୁ ବଞ୍ଚିତ ନହେଉ । ଏହା କହି ଦୁହେଁ ଗୁରୁଦେବଙ୍କର ଚରଣ ତଳରେ ସାଷ୍ଟାଙ୍ଗ ପ୍ରଣିପାତ କଲେ ।

# ଖଣା

ଗୁରୁଦେବ ସ୍ନେହରେ ବିଗଳିତ ହୋଇ ଦୁହିଙ୍କୁ ଭୂମିରୁ ଉଠାଇ ଆଲିଙ୍ଗନପୂର୍ବକ ଆଶୀର୍ବାଦ କରି କହିଲେ— ମୁଁ ତୁମ୍ଭମାନଙ୍କ ଉପରେ ସନ୍ତୁଷ୍ଟ ହୋଇଅଛି । ତୁମ୍ଭଠାରୁ ମୁଁ ଗୁରୁଦକ୍ଷିଣା ଅପେକ୍ଷା କରୁନାହିଁ । ଯେବେ ଗୁରୁଦକ୍ଷିଣା ଦେବା ନିମନ୍ତେ ସନ୍ତପ୍ତ ହେଉଥାଅ, ତାହାହେଲେ ତହିଁରୁ ଉଦ୍ଧାର ଲାଭ କରିବା ନିମନ୍ତେ ଉପାୟ ଦେଉଅଛି, ଗ୍ରହଣ କର । ଏହା କହି ପୁରୋଧା ଶୈଳେଶ୍ୱର ଦେବଙ୍କର ପ୍ରସାଦ ସହିତ ଭୂଗୋଳ, ଖଗୋଳ ଏବଂ ପାତାଳ ଗୋଳ ନାମକ ତିନିଖଣ୍ଡି ଗ୍ରନ୍ଥ ମିହିର ହସ୍ତରେ ସମର୍ପଣ କରି କହିଲେ—ଭାରତବର୍ଷରେ ଏହି ତିନିଗ୍ରନ୍ଥର ପ୍ରଚାର କରି ପାରିଲେ ମୁଁ ପୂର୍ଣ୍ଣ ଗୁରୁଦକ୍ଷିଣା ପାଇ ପାରିବି । ସେ ଦୁହେଁ ପୁନଃ ପ୍ରଣାମ କରି ଗୁରୁଦେବଙ୍କଠାରୁ ବିଦାୟ ନେଇ ଯାତ୍ରା ନିମନ୍ତେ ଉଦ୍ୟତ ହେବା ସମୟରେ ଦୈବାତ୍ ରାଜା ଏବଂ ରାଣୀ ସେଠାରେ ଉପସ୍ଥିତ ହେଲେ ।



# ଏକାଦଶ ପରିଚ୍ଛେଦ ।

ମାନବର କଳ୍ପନା ଏବଂ ବିଧିର ବିଧାନ ସବୁବେଳେ ମେଳ ଖାଏନାହିଁ । ଅନେକ କ୍ଷେତ୍ରରେ ବିଧିବିଧାନ ମନୁଷ୍ୟ କଳ୍ପନାର ବିପରୀତ । ଏସ୍ଥଳରେ କବିଙ୍କର ଉକ୍ତି ଉଲ୍ଲେଖଯୋଗ୍ୟ ।

ଯଥା— ଯଚ୍ଚିନ୍ତିତଂ ତଦିହ ଦୂରତରଂ ପ୍ରୟାତି,<br>
ଯଚ୍ଚେତସା ନଗଣିତଂ ତଦିହାଭ୍ୟୁପୈତି ।<br>
ପ୍ରାତର୍ଭବାମି ବସୁଧାଧିପଚକ୍ରବର୍ତ୍ତୀ<br>
ସୋଽହଂ ବ୍ରଜାମି ବିପିନେ ଜଟିଳ ସ୍ତପସ୍ୱୀ ॥

ରାତ୍ରି ପ୍ରଭାତପରେ ରାମାଭିଷେକ ସୁନିଶ୍ଚିତ । ସେଥି ନିମନ୍ତେ ସକଳ ପ୍ରକାର ଆୟୋଜନ ସଜ୍ଜୀଭୂତ । କିନ୍ତୁ କିଏ ଜାଣିଥିଲା— ରାମଙ୍କର ଅଭିଷେକ ପରିବର୍ତ୍ତିରେ ବନବାସ ହେବ ବୋଲି ? ଦେଖୁ ଦେଖୁ ରାତ୍ରି ପ୍ରଭାତ ନହେଉଣୁ ଚତୁର୍ଦ୍ଦଶବର୍ଷ ବନବାସବାର୍ତ୍ତା ବିଦ୍ୟୁଦ୍‌ବେଗରେ ସର୍ବତ୍ର ପ୍ରଚାରିତ ହୋଇଗଲା । ଯେଉଁ ରାମଚନ୍ଦ୍ରଙ୍କର ବସୁଧାଧିପଚକ୍ରବର୍ତ୍ତୀ ହେବାର କଥା, ସେହି ରାମଚନ୍ଦ୍ର ଜଟା ଏବଂ ବଲ୍କଳଧାରଣପୂର୍ବକ ବନଗମନ କଲେ । କାର୍ଯ୍ୟତଃ ବନବାସହିଁ ସାର ହେଲା, ସକଳ ଅଭିଷେକ ଆୟୋଜନ ପଣ୍ଡହେଲା । ମନୁଷ୍ୟ କଳ୍ପନା ଏବଂ ବିଧି ବିଧାନ ମଧ୍ୟରେ ଦ୍ୱନ୍ଦ୍ୱର ଏହା ଗୋଟିଏ ଜ୍ୱଳନ୍ତ ନିଦର୍ଶନ ନୁହେଁ କି ? ସଂସାରରେ ଏହିପରି ବିଚିତ୍ର ଘଟଣା ନିତ୍ୟ ଶତ ଶତ ସଂଘଟିତ ହେଉଅଛି ।

## ଶୀ'ନା

ଅଙ୍ଗ ପ୍ରାଣୋପମ ମିହିର ଏବଂ କ୍ଷମାର ବିବାହ ଉତ୍ସବଶେଷରେ ମାଙ୍ଗଳିକ କ୍ରିୟାରୂପେ ବିରାଟ ଉତ୍ସବର ଆୟୋଜନ ଲାଗିଛି । ରାଜା ଏବଂ ରାଣୀଙ୍କର ମନରେ ଅପୂର୍ବ ଆନନ୍ଦ ଖେଳୁଛି । ପୁଣି ଏହାର ଅଳ୍ପଦିନପରେ ବିବାହୋତ୍ସବ ମହା ସମାରୋହରେ ଅନୁଷ୍ଠିତ ହେବା ସୁନିର୍ଣ୍ଣିତ । ସେଥି ନିମନ୍ତେ ରାଜା ଏବଂ ରାଣୀଙ୍କର ମନରେ ଅପୂର୍ବ କଳ୍ପନା ଗୋଟି ଗୋଟି ହୋଇ ଉଦିତ ହେଉଅଛି । କିନ୍ତୁ କିଏ ଭାବିଥିଲା— 'ଏପରି ସୁଖର ସଂସାରରେ ଅକାଳ ବଜ୍ରପାତ ହେବବୋଲି ?' ଦେଖୁ ଦେଖୁ କ୍ଷମା ଏବଂ ମିହିର ବିଦାୟବେଶରେ ରାଣୀଙ୍କର ନିକଟରେ ଉପସ୍ଥିତ ହେଲେ ।

ବିଧିସୃଷ୍ଟିରେ ସ୍ତ୍ରୀ ଏବଂ ପୁରୁଷ ଭିନ୍ନ ଉପାଦାନରେ ଗଠିତ । ନାରୀ ପ୍ରକୃତି କୋମଳ, ପୁରୁଷ ପ୍ରକୃତି କର୍କଶ । ପୁଣି ନାରୀ ମାତୃତ୍ୱ ଲାଭ କରି ପାରିଲେ ଅଧିକ କୋମଳ ହୋଇପଡେ । ତାହାର ଅନ୍ତର ବାତ୍ସଲ୍ୟରେ ଅନୁପମ ହୋଇଯାଏ । ସେ ପ୍ରାଣକୁ ତୁଚ୍ଛ ଜ୍ଞାନ କରି ସନ୍ତାନର ଶ୍ରେୟଃସାଧନ କରେ, ତ୍ୟାଗରେ କି ସୁଖ ଅଛି; ତାହା ମାତାଙ୍କୁହିଁ ଗୋଚର । ସେଥି ନିମନ୍ତେ 'ଜନନୀ ଜଗତରେ ପରମା ଦେବତା । କେଉଁ ସନ୍ତାନ ସେ ନାମରେ ଶାନ୍ତିଲାଭ ନକରେ ?' ( ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ, ) ଏହା ଅକ୍ଷରେ ଅକ୍ଷରେ ସତ୍ୟ ।

ଯେତେବେଳେ କ୍ଷମା ଏବଂ ମିହିର ରାଣୀଙ୍କ ନିକଟରେ ଉପସ୍ଥିତ ହୋଇ ବିଦାୟ ପ୍ରାର୍ଥନା କଲେ, ସେତେବେଳେ ସଙ୍ଗେ ସଙ୍ଗେ ସତେ ଯେପରି ରାଣୀଙ୍କ ଉପରେ ଶତବଜ୍ର ପାତ ହୋଇଗଲା । ସେ ଏକା ବେଳକେ ମୂର୍ଚ୍ଛିତ ହୋଇଗଲେ ।

ତାହାଙ୍କର ଅଙ୍ଗପ୍ରତ୍ୟଙ୍ଗ ନିସ୍ପନ୍ଦ ହୋଇଗଲା । କଣ୍ଠ ଏବଂ ତାଳୁ ଶୁଷ୍କ ହେବାରେ ସେ ବାକ୍‌ଶକ୍ତି ଶୂନ୍ୟ ହୋଇ ଶାଳପୁତ୍ତଳିକାବତ୍ ନିର୍ନିମେଷ ଚକ୍ଷୁରେ ଚାହିଁ ରହିଲେ ।

କିନ୍ତୁ ସ୍ଥିର ନିଶ୍ଚୟ, ମନ ଏବଂ ନିମ୍ନାଭିମୁଖୀ ଜଳସ୍ରୋତକୁ ଫେରାଇବା ଅସମ୍ଭବ । ସୁତରାଂ ରାଣୀଙ୍କର ଏତାଦୃଶ ଅବସ୍ଥା ସନ୍ଦର୍ଶନ କରି ମଧ୍ୟ ମିହିରର ସଂକଳ୍ପରେ ଲବମାତ୍ର ପରିବର୍ତ୍ତନ ହେଲା ନାହିଁ । ସେ ସେହି ବଜ୍ରକଠୋର ସ୍ୱତନ୍ତ୍ରର ବଶବର୍ତ୍ତୀ ହୋଇ ବାରମ୍ବାର ବିଦାୟ ପ୍ରାର୍ଥନା କଲା । ତଥାପି, ରାଣୀ ସଂକଳ୍ପରୁ ନିବୃତ୍ତ ହେବା ନିମନ୍ତେ ବହୁ ପ୍ରବୋଧନା ଦେଲେ । ମାତ୍ର ସେସମସ୍ତ ନିରର୍ଥକ ହେଲା । ଫଳତଃ ରାଣୀଙ୍କର ଶୋକର ଉଚ୍ଛ୍ୱାସ ଅଧିକ ଉଚ୍ଛ୍ୱସିତ ହେଲା । ସେ ବାଧ୍ୟହୋଇ ପରିଶେଷରେ ମିହିର ଏବଂ କ୍ଷମାକୁ ଆଲିଙ୍ଗନ କରି ଅଶ୍ରୁଚକ୍ଷୁରେ ବିଦାୟ ଦେଲେ । ଅନନ୍ତର ଓଜସ୍ୱିନୀ ଯାତ୍ରୀ ଦୁହେଁ ବିଦାୟ ଉପଲକ୍ଷେ ପିତାଙ୍କ ନିକଟକୁ ଗମନ କଲେ ।

ପିତାପୁତ୍ର ସମ୍ବନ୍ଧ ଜଗତରେ ନିରୁପମ । ପୁତ୍ର ପିତାର ଆତ୍ମଜ ଓ ପୁତ୍ର ପ୍ରତି ପିତାର ଆଶୀର୍ବାଦ ଅନନ୍ତ । "ପିତା ପୁତ୍ରାଦିଚ୍ଛେତ୍ ପରାଜୟଂ" । ଅର୍ଥାତ୍ ପିତା ପୁତ୍ରକୁ ନିଜଠାରୁ ଅଧିକ ଗୁଣଶାଳୀ ହେବାକୁ କାମନା କରେ । କାରଣ ତହିଁରେହିଁ ପିତାର ଶାନ୍ତି ଏବଂ ତୃପ୍ତି ନିହିତ । ପୁଣି ପୁତ୍ର ଯୋଗେହିଁ ପିତାର ବୈକୁଣ୍ଠଲାଭ । ସୁତରାଂ ପିତାର ପୁତ୍ର ପ୍ରତି ଅଧିକ ଆଉ କଣ ଅଛି : ସ୍ୱଜପିତା ଆଜ୍ଞା ଉପସ୍ଥିତ ଉତ୍ସନ୍ନ ଯୋଗୁଁ ମର୍ତ୍ତ୍ୟରେ ସ୍ୱର୍ଗସୁଖ

ଉପଭୋଗ କରୁଅଛନ୍ତି, ଏପରି ସୁଖର ବେଳାରେ ପୁତ୍ରକଳ୍ପ ମିହିର ଏବଂ ପ୍ରାଣାଧିକା ଖନା ହଠାତ୍ ଉଜ୍ଜୟିନୀ ଯାତ୍ରା ନିମନ୍ତେ ରାଜାଙ୍କ ନିକଟରେ ବିଦାୟ ପ୍ରାର୍ଥନା କଲେ । ରାଜା ଏହି ଅନନୁଭୂତ ଘଟଣାରେ ହଠାତ୍ ଇତଃବତଃ ହୋଇଗଲେ । ତାହାଙ୍କର ଚକ୍ଷୁ ସ୍ଥିର ହୋଇଗଲା । ସେ କ୍ଷଣକାଳ ନିମନ୍ତେ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । କିଛିକ୍ଷଣପରେ କଥଞ୍ଚିତ୍ ଧୈର୍ଯ୍ୟ ଧାରଣ କରି ଯାତ୍ରାପ୍ରୟାସୀ ସେ ଦୁହିଙ୍କୁ ବହୁ ଉପଦେଶ ଦେଲେ । କିନ୍ତୁ ରାଜାଙ୍କର ସମସ୍ତ ଯତ୍ନ ବିଫଳ ହେଲା । ସେ ଦୁହେଁ ରାଜାଙ୍କର ନିବାରଣ ସତ୍ତ୍ୱେ ପ୍ରଣାମ କରି ନିଜର ଗନ୍ତବ୍ୟ ପଥରେ ଅଗ୍ରସର ହେଲେ । କହିବା ବାହୁଲ୍ୟ, ରାଜା, ରାଣୀ ଏବଂ ପୁରବାସିବର୍ଗ ବିକଳମନରେ ସ୍ୱଗୃହାଭିମୁଖେ ପ୍ରତ୍ୟାବୃତ୍ତ ହେଲେ ।



# ଦ୍ୱାଦଶ ପରିଚ୍ଛେଦ ।

"କର୍ମାୟତ୍ତଂ ଫଳଂ ପୁଂସାଂ, ବୁଦ୍ଧିଃ କର୍ମାନୁସାରିଣୀ"

ଭାଗ୍ୟର ଫଳାଫଳ ଲୋକର ଅଗୋଚର, ଏଥିନିମନ୍ତେ ତାହାର ଅନ୍ୟତମ ନାମ ଅଦୃଷ୍ଟ । ପ୍ରତ୍ୟେକେ ମଙ୍ଗଳ ନିମନ୍ତେ ସମୟ, ସୁବିଧା, ସାହାଯ୍ୟ ମଧ୍ୟ ଖୋଜନ୍ତି ଏବଂ ଅଭିପ୍ସିତ ଫଳ-ପ୍ରାପ୍ତି ପାଇଁ ଆଶା ମଧ୍ୟ କରନ୍ତି । କିନ୍ତୁ ତାହା କଣ ମନୁଷ୍ୟର ଆୟତ୍ତ ? ଫଳ ସେହି ଅଦୃଷ୍ଟାଧୀନ ।

ନବଦମ୍ପତୀ ପୁରନ୍ଦର ଜ୍ୟୋତିର୍ବିତ୍ । ସୁତରାଂ ଯାତ୍ରା ନିମନ୍ତେ ଯେଉଁ ଶୁଭବେଳା ନିରୂପଣ କରିଥିଲେ, ସେଥିରେବା କାହିଁକି ବ୍ୟତିକ୍ରମ ଘଟନ୍ତା ? କିନ୍ତୁ ଜ୍ୟୋତିର୍ବିତ୍ ହୁଅନ୍ତୁ ବା ଯେ କେହି ହୁଅନ୍ତୁ, ପ୍ରତ୍ୟେକଙ୍କୁ ଅଦୃଷ୍ଟ ଫଳ ଭୋଗିବାକୁ ହେବ । ମାନବ-କଥା ଦୂରେଥାଉ, ଦେବତା ସୁଦ୍ଧା ଏଥିରୁ ବହିର୍ଭୂତ ନୁହନ୍ତି । କଥିତ ଅଛି—"ସମୁଦ୍ରମନ୍ଥନେ ଲେଭେ ହରିର୍ଲକ୍ଷ୍ମୀଂ ହରୋ ବିଷଂ" । ମିହିର ଯାତ୍ରା ନିମନ୍ତେ ଯେଉଁ ବେଳା ନିରୂପଣ କରିଥିଲେ, ବଦାନ୍ୟରେ ବିଳମ୍ବ ହେବାରେ, ତହିଁର ବ୍ୟତିକ୍ରମ ହୋଇ ଯାଇଅଛି । ସୁତରାଂ ଯାତ୍ରା ଶୁଭମୁହୂର୍ତ୍ତରେ ନ ହୋଇ ଅଶୁଭ-ମୁହୂର୍ତ୍ତରେ ହେଲା । ଏଥିପ୍ରତି ସେ ଦୁହିଙ୍କର ଦୃଷ୍ଟି ଆକୃଷ୍ଟ ହୋଇ ପାରିନାହିଁ । ପୁଣି ଗୁରୁଜନଙ୍କର ଅସନ୍ତୋଷ ମଧ୍ୟ ଅଶୁଭର ଅନ୍ୟତମ କାରଣ । ଯାହା ହେଉ ଅଦୃଷ୍ଟର ପ୍ରେରଣାରେ ପତି ପତ୍ନୀ ଦୁହେଁ ସମୁଦ୍ରତୀରରେ ଉପସ୍ଥିତ ହୋଇ ନୌକାର ବ୍ୟବସ୍ଥା କରି ସମୁଦ୍ର ଯାତ୍ରା କଲେ । ସମୁଦ୍ରରେ କିୟଦ୍ଦୂର ଅଗ୍ରସର

ହେବା ପରେ ହଠାତ୍ ଭୀଷଣ ପ୍ରଳୟଙ୍କର ବାତ୍ୟା ଉପସ୍ଥିତ ହେଲା । ତାହାର ଯୋଗେ ସମୁଦ୍ର ଉତ୍ତାଳତରଙ୍ଗମାଳରେ ରୁଦ୍ରମୂର୍ତ୍ତି ଧାରଣ କଲା । ବାତ୍ୟାବିକ୍ଷୁବ୍ଧ ସମୁଦ୍ରଗର୍ଭେ ପ୍ରଳୟବେଗରେ ଆନ୍ଦୋଳିତ ହେବାକୁ ଲାଗିଲା । ସେହି ବେଗରେ ଶତ ଶତ ନୌକା ଚୂର୍ଣ୍ଣ ବିଚୂର୍ଣ୍ଣ ହେଲା ଏବଂ ଅସଂଖ୍ୟ କୌତୂହଳୀ ଓ ନୌକାରୋହୀ ଯାତ୍ରୀ ଅକାଳରେ ପ୍ରାଣବିସର୍ଜନ କଲେ । ଜଳଯାତ୍ରୀ ଯାତ୍ରୀଙ୍କର କୌତୂହଳୀମାନେ ନୌକାରକ୍ଷା ନିମନ୍ତେ ବହୁ ଯତ୍ନ କରି ମଧ୍ୟ ବିଫଳହେଲେ । ନୌକାଟି ଖଣ୍ଡବିଖଣ୍ଡ ହେଲା ଏବଂ ନୌବାହକମାନେ ପ୍ରାଣ ହରାଇଲେ ।

ନିହାର ଏହି ଅଚିନ୍ତନୀୟ ବିପଦର ପ୍ରାରମ୍ଭରୁ ସୁରକ୍ଷା ନିମନ୍ତେ ଗୁରୁଦେବପ୍ରଦତ୍ତ ଗ୍ରନ୍ଥଟିକୁ ନିଜବକ୍ଷରେ ଦୃଢ଼ଭାବରେ ବାନ୍ଧି ରଖିଥିଲା । ନୌକା ଧ୍ୱସ୍ତ ହେବାପରେ ପତିପତ୍ନୀ ଦୁହେଁ ଖଣ୍ଡିଏ କାଷ୍ଠଫଳକର ଆଶ୍ରୟ ପାଇ ଅନାୟତ୍ତଭାବରେ ଭାସିବାକୁ ଲାଗିଲେ । କିନ୍ତୁ ଉଭୟ ସଂଜ୍ଞାହୀନ । କେବଳ ଲହରୀବେଗରେ ଯନ୍ତ୍ରବତ୍ ସେମାନଙ୍କର ଗତି ହେଉଥିଲା । ଏ କ୍ଷେତ୍ରରେ ମନୁଷ୍ୟର ବିଦ୍ୟା, ବୁଦ୍ଧି, ଦମ୍ଭ, ଅହଙ୍କାର ଯୁଗେ ଯୁଗେ ପରାଜିତ । ଏହିପରି ପରୀକ୍ଷାରୁ ମାନୁଷୀ ଶକ୍ତି ଏବଂ ଐଶୀ ଶକ୍ତିର ପାର୍ଥକ୍ୟ ବିଶଦଭାବରେ ବୋଧଗମ୍ୟ ହୋଇଥାଏ କି ନା ।

ପ୍ରକୃତି ପରିବର୍ତ୍ତନଶୀଳ । ପରିବର୍ତ୍ତନହିଁ ତାହାର ବିଶେଷତ୍ୱ । ଏଥିରେ କୌଣସି ଅବସ୍ଥା ଧାରାବାହିକରୂପେ ଶାଶ୍ୱତ ସ୍ଥିତି ଲାଭ କରିପାରେ ନାହିଁ । ପ୍ରକୃତରେ ଯେ ବର୍ତ୍ତମାନ ରୁଦ୍ର, ବୀଭତ୍ସ, ସେ ପୁଣି ପରକ୍ଷଣରେ କମନୀୟ, ଯେ ବର୍ତ୍ତମାନ ବିପଦସମୁଦ୍ରରେ

ଭାସମାନ, ସେ ପୁଣି ମୁହୂର୍ତ୍ତିକପରେ ସୁଖଶଯ୍ୟାରେ ଶଯ୍ୟାନା। ଏହାହିଁ ପ୍ରକୃତିର ସନାତନୀ ନୀତି । ଦେଖୁ ଦେଖୁ ରୁଦ୍ର ପ୍ରକୃତି ପୁଣି ରମଣୀୟ ମଧୁର ମୂର୍ତ୍ତି ଧାରଣ କଲା । ଆକାଶ ନିର୍ମଳ, ବାୟୁମଣ୍ଡଳ ସ୍ଥିର ଏବଂ ସମୁଦ୍ର ପ୍ରଶାନ୍ତ ହୋଇଗଲା । ଜଳସ୍ଥଳ ସର୍ବତ୍ର ଜ୍ୟୋତ୍ସ୍ନାର ଅପୂର୍ବଲୀଳା ମନଃପ୍ରାଣ ମୁଗ୍ଧ କଲା। ପତିପତ୍ନୀ ଦୁହେଁ ସ୍ଥିର ସମୁଦ୍ରରେ ଅନାହତଭାବରେ ଭାସମାନ ହେଲେ ।

କ୍ଷମା ଏବଂ ମିହିରର ବର୍ତ୍ତମାନ ଯେଉଁ ଅବସ୍ଥା, ସେଥିରେ ସେ ଦୁହିଙ୍କ ପ୍ରତି କଲ୍ୟାଣ ଆଶା କରିବା ବିଡ଼ମ୍ବନା । କିନ୍ତୁ ବିଭୂଶକ୍ତି ଅଘଟନ ଘଟନାପଟୀୟସୀ । ସେ ଶକ୍ତିରେ ଦୂର ଦାରୁ ହୁଏ, ଦାରୁ ମଧ ଦୂର ହୁଏ । ଦେଖୁଦେଖୁ କାହୁଁ ଏକ ବିରାଟ ପୋତ ଆସି ଭାସମାନ ଯୁବକ ଯୁବତୀଙ୍କର ସନ୍ନିକଟବର୍ତ୍ତୀ ହେଲା । ପୋତାଧ୍ୟକ୍ଷ ଉଜ୍ଜୟିନୀ ବାସୀ ଜନୈକ ରତ୍ନବଣିକ୍ ସେହି ପୋତରେ ବାଣିଜ୍ୟରୁ ସ୍ୱଗୃହକୁ ପ୍ରତ୍ୟାବୃତ୍ତ ହେଉଥିଲା । କେଜାଣି କାହାର ନିର୍ଦ୍ଦେଶରେ ସେହି ଭାସମାନ ଯୁବକଯୁବତୀଙ୍କ ପ୍ରତି ତାହାଙ୍କର ଦୃଷ୍ଟି ଆକୃଷ୍ଟ ହେଲା । ପ୍ରୋକ୍ତ ବଣିକ୍ ଘଟନା ବୁଝିବା ଅଭିପ୍ରାୟରେ ସେ ଦୁହିଙ୍କର ଉଦ୍ଧାର ନିମନ୍ତେ ନୌକାସହ ଦୁଇଜଣ ଭୃତ୍ୟ ପ୍ରେରଣ କଲେ । ଭୃତ୍ୟ ଦୁହେଁ ପ୍ରଭୁଙ୍କର ଆଦେଶରେ ମୁମୂର୍ଷୁ ଯୁବକଯୁବତୀଙ୍କୁ ଉଦ୍ଧାର କରି ପ୍ରଭୁଙ୍କ ନିକଟରେ ଉପସ୍ଥାପିତ କଲେ । ସଙ୍ଗେ ସଙ୍ଗେ ଉପଯୁକ୍ତ ଉପଚାର କରାଯିବାରେ ଦୁହେଁ ସଂଜ୍ଞା ଲାଭ କଲେ। ବଣିକ୍ ସେମାନଙ୍କର ଅପୂର୍ବ ରୂପଲାବଣ୍ୟରେ ମୁଗ୍ଧ ହୋଇ ସେମାନଙ୍କର ପରିଚୟ ଜିଜ୍ଞାସା କଲେ । ପରିଚୟରୁ ଜଣାଗଲା— ଦୁହେଁ ପତିପତ୍ନୀ; ଉଜ୍ଜୟିନୀ ବାସୀ ଏବଂ ଜ୍ୟୋତିଷଶାସ୍ତ୍ରରେ ସୁପଣ୍ଡିତ।

## ଖନା

ବଣିକ ଏପର୍ଯ୍ୟନ୍ତ ସମୁଦ୍ରଯାତ୍ରାରେ ଉପଯୁକ୍ତ ସହଚରଅଭାବରୁ ସୁଖାଳାପସୁଖରୁ ବଞ୍ଚିତ ହୋଇ ଦୁଃଖ ଅନୁଭବ କରୁଥିଲେ । ଏହି ଦୁହିଙ୍କର ସାହଚର୍ଯ୍ୟ ଲାଭରେ ଅତ୍ୟନ୍ତ ପ୍ରୀତ ହୋଇ ଆଳାପ କରି ଆନନ୍ଦ ଅନୁଭବ କଲେ । ମିହିର ଏବଂ ଖନା ବଣିକଙ୍କ ଦୟାରୁ ପୁନର୍ଜୀବନ ଲାଭ କରିଥିବାରୁ ତାହାଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରିଥିଲେ ।

ଅନନ୍ତର ବଣିକ୍ ଏବଂ ପଣ୍ଡିତଦମ୍ପତୀ ସୁଖାଳାପ କରି କରି କ୍ରମଶଃ ଉଜ୍ଜୟିନୀ ପ୍ରତି ଅଗ୍ରସର ହେଲେ । ତଥାପି ଉଜ୍ଜୟିନୀ ବହୁ ଦୂରରେ । ବହୁଦିନ ବ୍ୟାପୀ ପୋତାରୋହଣ ଯୋଗୁଁ ପୋତଯାତ୍ରୀଙ୍କର କ୍ଳାନ୍ତି ଅନୁଭୂତ ହେଲା । ଭୂମିବିହାର ସେମାନଙ୍କ ପକ୍ଷରେ ଏକପ୍ରକାର ଦୁର୍ଲ୍ଲଭ ହୋଇପଡ଼ିଥିଲା । ଦୈବାତ୍ ପୋତ କୌଣସି ଦ୍ୱୀପର ନିକଟରେ ଉପସ୍ଥିତ ହେବାରୁ ଭୂବିହାର ନିମନ୍ତେ ସେମାନେ ସମସ୍ତେ ସେଠାରେ ଅବତରଣ କଲେ । ମନସୁଖରେ ଇତସ୍ତତଃ ବିଚରଣ କରୁ କରୁ ଗୋଟିଏ ଆସନ୍ନପ୍ରସବା ଧେନୁ ବଣିକ୍ ଏବଂ ମିହିରର ଦୃଷ୍ଟିଗୋଚର ହେଲା । ସେତେବେଳେ ଖନା ଅନ୍ୟତ୍ର ବିଚରଣ କରୁଥିଲା । ସେ ଗାଭୀର ଅବସ୍ଥାରୁ ଅନୁମିତ ହେଉଥିଲା—ପ୍ରସବ ଅବିଳମ୍ବେ ହେବ । ସୁତରାଂ ବଣିକ୍ ମିହିରର ଜ୍ୟୋତିର୍ବିଦ୍ୟା-ପରୀକ୍ଷାନିମନ୍ତେ କୌତୂହଳୀ ହୋଇ ପ୍ରୋକ୍ତ ଧେନୁର ପ୍ରସବ ବିଷୟରେ କତିପୟ ପ୍ରଶ୍ନ କଲେ । ମିହିର ତତ୍କ୍ଷଣାତ୍ ଗଣନା କରି ପ୍ରସବର ସମୟ ଏବଂ ବତ୍ସର ଅବସ୍ଥା ଓ ବର୍ଣ୍ଣ ବିଷୟରେ ଉତ୍ତର ଶୁଣାଇଥିଲେ । ଗଣନାଫଳରେ ପ୍ରସବସମୟ ନିକଟବର୍ତ୍ତୀ ଜାଣି ଉଭୟେ ଫଳଦର୍ଶନଆଶାରେ ଅପେକ୍ଷା କଲେ । କାର୍ଯ୍ୟତଃ ମିହିର ନିର୍ଦ୍ଧାରିତ ସମୟରେ ବତ୍ସର ଜନ୍ମ ହେଲା ଏବଂ ଅବସ୍ଥାରେ

ମଧ୍ୟ କୌଣସି ବ୍ୟତିକ୍ରମ ଦେଖାଯାଉନଥିଲା । ପରନ୍ତୁ ବର୍ଣ୍ଣ ଶୁଭ୍ରହେବା ପରିବର୍ତ୍ତେ କୃଷ୍ଣାଭ ଦେଖାଯାଉଥିଲା । ଏହି ବର୍ଣ୍ଣବୈଷମ୍ୟ ଯୋଗୁଁ ବଣିକ୍ କହିଲେ—ମିହିର ! ତୁମର ଗଣନା ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ନୁହେ ।

ମିହିର ତେଜସ୍ୱୀ ଏବଂ ଅଭିମାନୀ । ସେ ବଣିକ୍‌କର୍ତ୍ତୃକ ଏବଂବିଧ ଦୋଷ ପ୍ରଦର୍ଶନରେ ଅପ୍ରତିଭ ହୋଇଗଲେ । ପ୍ରକୃତରେ ଗଣନାରେ ବ୍ୟତ୍ୟୟ ଘଟିଅଛି । ସୁତରାଂ ସେ ଆତ୍ମଗ୍ଲାନି ଅନୁଭବ କଲେ । କେବଳ ତେତିକି ନୁହେ, ମିହିର ବୁଝିଲେ—ନିଜର ଗଣନା ନିଶ୍ଚୟ ପ୍ରମାଦ ପୂର୍ଣ୍ଣ, ଜ୍ୟୋତିଃଶାସ୍ତ୍ର ମଧ୍ୟ କାକତାଳୀୟ ଶାସ୍ତ୍ର । ସୁତରାଂ ଏପରି ଶାସ୍ତ୍ରରେ ଆବାଲ୍ୟ ଅଧ୍ୟବସାୟ କରିବା ସର୍ବଥା ଅନୁଚିତ ହୋଇଅଛି । ତେବେ ଗୁରୁଦତ୍ତଗ୍ରନ୍ଥସମୂହର ଭାରତରେ ପ୍ରଚାର କରିବାରେ କି ପ୍ରୟୋଜନ ଅଛି ? ବରଂ ସେ ସମସ୍ତ ଶୀଘ୍ର ଜଳସାତ୍ କରିବା ଅତ୍ୟନ୍ତ ଶ୍ରେୟସ୍କର । ସେ ଏହା ଭାବି ଦ୍ରୁତଗତିରେ ପୋତରେ ଉପସ୍ଥିତ ହୋଇ ପ୍ରୋକ୍ତ ତିନିଗ୍ରନ୍ଥ ମଧ୍ୟରୁ ଖଗୋଲ ବ୍ୟତୀତ ଅପର ଗ୍ରନ୍ଥଦ୍ୱୟ ଛିନ୍ନ ବିଚ୍ଛିନ୍ନ କରି ସମୁଦ୍ରରେ ନିକ୍ଷେପ କଲେ । ଦୈବାତ୍ ଏହା କାହାର ଦୃଷ୍ଟିଗୋଚର ହୋଇ ନଥିଲା । କିନ୍ତୁ ତୃତୀୟ ଗ୍ରନ୍ଥ ଜଳସାତ୍ କରିବାକୁ ଉଦ୍ୟତ ହେବା ସମୟରେ ତାହା ଦୂରରୁ କ୍ଷମାର ଦୃଷ୍ଟିପଥାରୂଢ଼ ହେଲା । କ୍ଷମା ଏ ସର୍ବନାଶବ୍ୟାପାର-ଦର୍ଶନରେ ବ୍ୟାକୁଳ ହୋଇ ମିହିର ନିକଟକୁ ଦ୍ରୁତଗତିରେ ପ୍ରଧାବିତ ହେଲା । କ୍ଷମା ମିହିରହସ୍ତରୁ ଉକ୍ତ ଗ୍ରନ୍ଥକୁ ଆୟତ୍ତ କରି ଉପସ୍ଥିତ ବିପ୍ଳବର କାରଣ ଜିଜ୍ଞାସା କଲା । ମିହିର ଆନୁପୂର୍ବିକ ସମସ୍ତ ଘଟଣା ଜ୍ଞାପନ କରି ବର୍ଣ୍ଣର ଅସାମଞ୍ଜସ୍ୟ ଯୋଗୁଁ ଶାସ୍ତ୍ରର ନିରର୍ଥକତା ପ୍ରଦର୍ଶନ କରିଥିଲେ ।

ଅନୁଭୂତି ବ୍ୟତିରେକେ ଜ୍ଞାନଲାଭ ଅସମ୍ଭବ । କେବଳ କେବଳ ବିଦ୍ୟା ମୁଖସ୍ଥ କରି ପାରିଲେ ଯେ ଲୋକ ଜ୍ଞାନୀ ହୋଇ ପାରିବ, ଏହା ଦକାପି ନୁହେଁ । ବରଂ ମୁଖସ୍ଥବିଦ୍ୟଲୋକଅପେକ୍ଷା ଶିରକ୍ଷର ଅନୁଭବୀର ଆସନ ଉଚ୍ଚତର। କାରଣ ବିଦ୍ୱାନ୍ ଜ୍ଞାନର ଅଭାବରୁ ଅନେକଧା ପ୍ରମାଦ ଭୋଗ କରିବାକୁ ବାଧ୍ୟ ହୋଇଥାଏ। ସୁତରାଂ ପ୍ରକୃତ ଜ୍ଞାନ ଲାଭ କରିବାକୁ ହେଲେ ଅନୁଭବ ଏକାନ୍ତ ଆବଶ୍ୟକ । ତାହା ନହେଲେ ଶିକ୍ଷା ପୂର୍ଣ୍ଣାଙ୍ଗ ନୁହେ । ନଚେତ୍ ପଦେ ପଦେ ପ୍ରମାଦ ଅବଶ୍ୟମ୍ଭାବୀ । ମିହିର ବିଦ୍ୱାନ୍, କିନ୍ତୁ ଜ୍ଞାନୀ ନୁହନ୍ତି । କାରଣ ସଂସାର କ୍ଷେତ୍ରରେ ତାହାଙ୍କର ଅନୁଭବ ଜନ୍ମି ନଥିଲା । ତାହା ହୋଇଥିଲେ ସେ କଦାପି ଏପରି ଭ୍ରମରେ ପଡ଼ି ନଥାନ୍ତେ । ପ୍ରସବର ଅବ୍ୟବହିତ ପରେ ଅର୍ଥାତ୍ ପ୍ରାଥମିକ ଅବସ୍ଥାରେ ବତ୍ସର ପ୍ରକୃତ ବର୍ଣ୍ଣ କଦାପି ପ୍ରକଟିତ ହୁଏ ନାହିଁ । ମାତ୍ର ଲେହନ ପରେ କ୍ରମଶଃ ତାହାର ବର୍ଣ୍ଣ ପ୍ରକାଶିତ ହୋଇଥାଏ। ମିହିର ସଦ୍ୟଃପ୍ରସୂତ ବତ୍ସର ବର୍ଣ୍ଣକୁ ପ୍ରକୃତ ବର୍ଣ୍ଣ ବୋଲି ଗ୍ରହଣ କଲେ । ସୁତରାଂ ଏପରି ଭ୍ରମାଦଗ୍ରସ୍ତ ନହୋଇ ଆଉ କଅଣ ହୁଅନ୍ତେ ?

କ୍ଷମା ମିହିର ଗଣନାର ଯାଥାର୍ଥ୍ୟ ବୁଝିବା ନିମନ୍ତେ ଯେତେବେଳେ ବତ୍ସ ଉପରେ ଦୃଷ୍ଟିପାତ କରିଅଛନ୍ତି, ସେତେବେଳକୁ ତାହାର ବର୍ଣ୍ଣ ଶୁଭ୍ର ହୋଇ ସାରିଛି । ଏତଦ୍ଦର୍ଶନରେ କ୍ଷମା ବିସ୍ମିତ ହୋଇ କହିଲା—ମିହିର ! କିଏ କହିଲା—ତୁମ୍ଭର ଗଣନା ଭ୍ରାନ୍ତ ? କିଏ କହିଲା—ଜ୍ୟୋତିଃଶାସ୍ତ୍ର କାକତାଳୀୟ ? ବର୍ତ୍ତମାନ ଦେଖ— ତୁମ୍ଭର ଗଣନା କିପରି ଅକ୍ଷରେ ଅକ୍ଷରେ ସତ୍ୟ ।

# ଖନା

ମିହିର ଖନାଙ୍କ ନିର୍ଦ୍ଦେଶାନୁସାରେ ବପ୍ପାର ଗୁରୁରୂପ ଦେଖି ହତୋତ୍ସାହ ହେବାକୁ ଲାଗିଲେ । ଅଧିକନ୍ତୁ ଗ୍ରନ୍ଥ ଦୁଇଟି ଧ୍ୱଂସ କରିଥିବା ହେତୁରୁ ଅନୁତପ୍ତ ହୋଇ ସମୁଦ୍ରରେ ଆତ୍ମବିସର୍ଜନ କରିବାକୁ ଉଦ୍ୟତ ହେଲେ । କିନ୍ତୁ ଖନା ନାନା ସାନ୍ତ୍ୱନା ପ୍ରଦାନ କରି ଶାନ୍ତ ବିଧାନ କଲା ।



# ତ୍ରୟୋଦଶ ପରିଚ୍ଛେଦ ।

ଅନନ୍ତର ପୋତ ଉଜ୍ଜୟିନୀ ଅଭିମୁଖରେ ଚାଳିତ ହେଲା । ପୋତ ଯଥାସମୟରେ ସମୁଦ୍ରରୁ ସିପ୍ରାନଦୀରେ ଯାଇ ଉଜ୍ଜୟିନୀରେ ଉପସ୍ଥିତ ହେଲା । ବଣିକ୍ ମିହିରର ଗଣନାରେ ଅତ୍ୟନ୍ତ ପ୍ରୀତ ହୋଇଥିଲେ । ସୁତରାଂ ସେ ନିଜ କାର୍ଯ୍ୟରେ ବ୍ୟସ୍ତ ନହୋଇ ପୋତରୁ ଅବତରଣ କରିବାମାତ୍ରକେ ପଣ୍ଡିତଦମ୍ପତୀଙ୍କର ସମଭିବ୍ୟାହାରରେ ରାଜାଙ୍କ ନିକଟକୁ ଗମନ କଲେ । ଦୈବାତ୍ ସେତେବେଳେ ରାଜସଭା ଅନୁଷ୍ଠିତ ହେଉଥିଲା । ରାଜା ବିକ୍ରମ ମଧ୍ୟ ସଭାରେ ଆସୀନ ହୋଇଥିଲେ । ବଣିକ୍ ରାଜାଙ୍କର ନିକଟବର୍ତ୍ତୀ ହୋଇ ନବାଗତ ପଣ୍ଡିତଦମ୍ପତୀଙ୍କର ରାଜସାକ୍ଷାତକାର ନିମନ୍ତେ ଅନୁମତି ପ୍ରାର୍ଥନା କଲେ । ବିଦ୍ୟାରସିକ ବିକ୍ରମ ବଣିକଙ୍କର ପ୍ରାର୍ଥନାରେ ଅନୁକୂଳ ଅନୁମତି ପ୍ରଦାନ କରିଥିଲେ । ରାଜାଦେଶରେ ବିଜ୍ଞ ପତିପତ୍ନୀ ଦୁହେଁ ସଭାସ୍ଥଳରେ ଉପସ୍ଥିତ ହେଲେ । ରାଜା ସେ ଦୁହିଁଙ୍କର ରୂପଶ୍ରୀରୁ ଅସାଧାରଣ ପ୍ରତିଭାର ପରିଚୟ ଲାଭକରି ସ୍ୱକୀୟ ଜ୍ୟୋତିଷାଚାର୍ଯ୍ୟ ବୃଦ୍ଧ ବରାହମିହିରଙ୍କ ଉପରେ ସେ ଦୁହିଁଙ୍କର ତଦ୍ଭାର ନ୍ୟସ୍ତ କଲେ ।

ବରାହ ବର୍ତ୍ତମାନ ଉଭୟ ସଙ୍କଟରେ ଦୋଦୁଲ୍ୟମାନ । ଉପସ୍ଥିତ ମିହିର ଯେ ତାହାଙ୍କର ପୁତ୍ର, ଏହା ତାହାଙ୍କର ଅଗୋଚର । କ୍ଷେତ୍ରଜ୍ଞ ପ୍ରଭୃତି ବହିରଙ୍ଗ ସୂତ୍ରସମ୍ବନ୍ଧରେ ପିତା ମିହିରଙ୍କ ଅପରିଚିତ, କିନ୍ତୁ ଆତ୍ମାସମ୍ପର୍କରେ ଅପରିଚୟର [illegible] ଅବକାଶ ନାହିଁ । ସେ ସମ୍ପର୍କ ଈଶ୍ୱରସୃଷ୍ଟ, ସେଥିରେ ମନୁଷ୍ୟଙ୍କୁ

କରଣୀ ନାହିଁ ବା ଇତସ୍ତତଃ ହେବାର ସାମର୍ଥ୍ୟ ନାହିଁ । ଏପରି ମିଳନରେ ଅନ୍ତରରେ କି ଆନ୍ଦୋଳନ, କି ଆବେଗର ଉତ୍ପତ୍ତି ହୁଏ, ତାହା ସେହି ଅନ୍ତରକୁ ଗୋଚର । ବସନ୍ତଙ୍କର ଦୃଷ୍ଟି ମିହିର ଉପରେ ପଡ଼ିଲାମାତ୍ରେ ତାଙ୍କର ଅନ୍ତରରେ ହଠାତ୍ ଗୋଟାଏ ଅପୂର୍ବ ବିଦ୍ୟୁତର ସ୍ଫୁରଣ ହୋଇଗଲା । କେଉଁ ଅତୀତର ଗୋଟିଏ ଅସ୍ପଷ୍ଟ—ଛବି ଚକ୍ଷୁ ସମକ୍ଷରେ ନୃତ୍ୟ କଲା, ହୃଦୟର ଗଭୀରତମ ପ୍ରଦେଶରୁ ଏକ ଅପୂର୍ବ ଉଚ୍ଛ୍ୱାସ ଉଚ୍ଛ୍ୱସିତ ହେଲା । ଏହିପରି ଏକ ଅଭିନବ ଅବସ୍ଥାର ଅଧୀନ ହୋଇ ବସନ୍ତ କ୍ଷଣକାଳ ଆତ୍ମବିସ୍ମୃତ ହୋଇଗଲେ । କିନ୍ତୁ ଗୀତାରେ ଉକ୍ତ ଅଛି— ମମ ମାୟା ଦୁରତ୍ୟୟା । ତେଣୁ ବସନ୍ତ ନିୟତିର ନିୟମରେ ପୁଣି ମାୟାର ଆୟତ୍ତ ହୋଇପଡ଼ିଲେ । ତାହାଙ୍କର ସେହି ଗୂଢ଼ ଅନୁଭୂତି କେଉଁଆଡ଼େ ଅନ୍ତର୍ହିତ ହୋଇଗଲା ।

ବସନ୍ତ ଅବାଲ୍ୟ ଲବ୍ଧପ୍ରତିଷ୍ଠ । ପ୍ରତିଯୋଗିତାକ୍ଷେତ୍ରରେ କେହି କେବେ ବସନ୍ତଙ୍କ ଅପେକ୍ଷା ବରିଷ୍ଠ ହୋଇ ପାରିନାହାନ୍ତି । ସମଗ୍ର ଭାରତରେ ସେ ନିଜ ବିଦ୍ୟାରେ ପ୍ରଦୀପ୍ତଭାସ୍କରତୁଲ୍ୟ ମହିମାମୟ ହୋଇଥିଲେ । ବର୍ତ୍ତମାନ ସେ ଅତ୍ୟନ୍ତ ଜରାଗ୍ରସ୍ତ । କାଳେ ଏହି ପଶ୍ଚିମ ଜୀବନରେ କେହି ପ୍ରତିଦ୍ୱନ୍ଦ୍ୱୀ ହୋଇ ଜୀବନବ୍ୟାପୀ ତପସ୍ୟାଲବ୍ଧ ପ୍ରତିଷ୍ଠାର ବୈରୀ ହେବ, ଏହି ଆଶଙ୍କା ତାହାଙ୍କର ଶକ୍ତିସାମର୍ଥ୍ୟହୀନ ବାର୍ଦ୍ଧକ୍ୟରେ ପ୍ରତିମୁହୂର୍ତ୍ତରେ ଉଦିତ ହେଉଅଛି । ପ୍ରକୃତରେ ବାର୍ଦ୍ଧକ୍ୟ ଅତ୍ୟନ୍ତ ନୈରାଶ୍ୟମୟ । ଲୋକ ତଦଧୀନ ହୋଇଗଲେ ସମସ୍ତ ଶକ୍ତି, ସାହସ ହରାଇ ଦୁର୍ବଳ ହୋଇପଡ଼େ । ସୁତରାଂ ବସନ୍ତ ବା ସେଥିରୁ କିପରି ପୃଥକ ହେବେ ? ସେ ମଧ୍ୟ ଯୁବକ ଜ୍ୟୋତିର୍ବିଦ୍ ଦମ୍ପତୀଙ୍କ ରୂପଶ୍ରୀରୁ ସେ ଦୁହିଁଙ୍କର ଅଗାଧ ବିଦ୍ୟାର ସୂଚନା ପାଇପାରୁ ଅଛନ୍ତି । ପଣ୍ଡିତଦମ୍ପତୀ

# ଗଣନା

ଜ୍ୟୋତିର୍ବିଦ୍ୟା ବ୍ୟତିରେକେ ଅନ୍ୟ ବିଦ୍ୟାରେ ଧୁରନ୍ଧର ହୋଇଥିଲେ ବରାହଙ୍କର ଚିନ୍ତାର କାରଣ ନଥିଲା । କିନ୍ତୁ ଦୁର୍ଭାଗ୍ୟକୁ ହେଉ ବା ସୌଭାଗ୍ୟକୁ ହେଉ, ଦୁହେଁ ଜ୍ୟୋତିର୍ବିଦ୍ୟାରେ ପ୍ରବୀଣ । ତେଣୁ ବରାହ ବିଷଣ୍ଣ ଓ ଚିନ୍ତାଗ୍ରସ୍ତ ହୋଇ ଉପସ୍ଥିତ ଯୁବକଯୁବତୀଦୁହିଁଙ୍କୁ ନିଜର ବୈରୀ— ବୋଲି ସ୍ଥିର କଲେ । ବର୍ତ୍ତମାନ ବରାହ ଯାହାକୁ ବୈରଚକ୍ଷୁରେ ଦେଖୁଅଛନ୍ତି, ରାଜାଙ୍କର ଆଦେଶରେ ସେ ଦୁହିଁଙ୍କର ଚର୍ଚ୍ଚାଭାର ଗ୍ରହଣ କରିବା କଦାପି ତାହାଙ୍କର ପ୍ରୀତିକର ହୋଇ ନପାରେ । ସୁତରାଂ ବରାହ ଅସହିଷ୍ଣୁ ଭାବରେ ସେ ରାଜାଦେଶ ପ୍ରତ୍ୟାଖ୍ୟାନ କଲେ ।

ବରାହ କେବଳ ସେତିକିରେ ସନ୍ତୁଷ୍ଟ ନହୋଇ ନବାଗତ ଜ୍ୟୋତିଷୀ ପତିପତ୍ନୀଙ୍କର ପରୀକ୍ଷା ନିମନ୍ତେ ଗୁରୁତର ଆପତ୍ତି ଉପସ୍ଥାପିତ କଲେ । ସଭାସ୍ଥ ଅପରାପର ପଣ୍ଡିତମାନେ ମଧ୍ୟ ବରାହଙ୍କ ଆପତ୍ତିସୂଚକ ପ୍ରସ୍ତାବକୁ ଅନ୍ତରର ସହିତ ଅନୁମୋଦନ କଲେ । କିନ୍ତୁ ରାଜା ସେ ଦୁହିଙ୍କ ପ୍ରତି ଅନୁରାଗପରବଶ ହୋଇଥିବାରୁ ପରୀକ୍ଷା ବିଷୟରେ ପ୍ରଥମତଃ ସମ୍ମତ ହେଲେ ନାହିଁ । ମାତ୍ର ପଣ୍ଡିତମାନେ ନାନା ଅଶଙ୍କାର ଅବତାରଣା କରି ଅସନ୍ତୋଷ ପ୍ରକାଶ କରିବାରୁ ସୁଧୀପ୍ରିୟ ରାଜା ଜ୍ୟୋତିଷବିଷୟରେ ପ୍ରଶ୍ନ କରିବାକୁ ବରାହମିହିରଙ୍କୁ ଅନୁରୋଧ କଲେ । ମାତ୍ର ବରାହ ଏପରି ପାତ୍ରରେ ପ୍ରାଶ୍ନିକ ହେବାକୁ ଆତ୍ମଗ୍ଲାନିକର ମନେକରି ଉପେକ୍ଷା କରିବାରୁ ପ୍ରଶ୍ନଭାର ଅନ୍ୟ ପାରିଷଦଙ୍କ ଉପରେ ନ୍ୟସ୍ତ ହେଲା ।

ଉପସ୍ଥିତ ରାଜସଭାର ଲୋକସଂଖ୍ୟା ଏବଂ ଚକ୍ଷୁସଂଖ୍ୟା ଗଣନାବଳରେ ନିରୂପଣ କରିବା ନିମନ୍ତେ ମିହିରଙ୍କୁ ପ୍ରଶ୍ନ କରାଗଲା ।

# ଖନା

ମିହିର ମଧ୍ୟ ଅନାୟାସରେ ଉଭୟ ସଂଖ୍ୟା ନିରୂପଣ କରି ପ୍ରକାଶ କଲେ । ମିହିରପ୍ରଦତ୍ତ ଉତ୍ତରର ଯାଥାର୍ଥ୍ୟ ପରୀକ୍ଷା କରିବା ନିମନ୍ତେ ଲୋକଗଣନା ଏବଂ ଚକ୍ଷୁର୍ଗଣନା ମଧ୍ୟ ହେଲା । କିନ୍ତୁ ଫଳତଃ ଚକ୍ଷୁଃସଂଖ୍ୟା ସମାନ ହେଲେହେଁ ଲୋକସଂଖ୍ୟାରେ ଗୋଟିଏ ମାତ୍ର ଲୋକର ଅଭାବ ପରିଲକ୍ଷିତ ହେଲା । ଗଣନାଫଳରେ ଏପରି ବିପର୍ଯ୍ୟୟ ଦେଖାଯିବାରୁ ପଣ୍ଡିତମାନେ ବିଶେଷତଃ ବରାହମିହିର ଆନନ୍ଦରେ ଉଦ୍‌ବେଳ ହୋଇଗଲେ, ତାହାଙ୍କର ନୈରାଶ୍ୟ ମଧ୍ୟରେ ଆଶାର ସଞ୍ଚାର ହେଲା, ସେ କଥଞ୍ଚିତ୍ ଆଶ୍ୱସ୍ତି ଲାଭକଲେ । ଏତଦ୍ ବ୍ୟତୀତ ପଣ୍ଡିତମାନଙ୍କ ମଧ୍ୟରୁ କେହି ମିହିରଙ୍କୁ ଅପଣ୍ଡିତ, କେହିବା ଜ୍ୟୋତିଷଶାସ୍ତ୍ରକୁ କାକତାଳୀୟ ଶାସ୍ତ୍ର ଇତ୍ୟାଦି କଟୂକ୍ତିମାନ କହିବାକୁ ଲାଗିଲେ । କିନ୍ତୁ ରାଜା ବିକ୍ରମ ଏଥିରେ ବିଶ୍ୱାସ ନକରି ପୁନର୍ଗଣନା ନିମନ୍ତେ ଆଦେଶ ଦେଲେ । ମାତ୍ର ଫଳତଃ କୌଣସି ପରିବର୍ତ୍ତନ ଦେଖାଗଲା ନାହିଁ । ଦ୍ୱିତୀୟବାର ଗଣନା ଫଳରେ ପଣ୍ଡିତମାନଙ୍କର ଅହଙ୍କାର ଅଧିକ ବର୍ଦ୍ଧିତ ହେଲା । ସେମାନେ ଅପେକ୍ଷାକୃତ ଗୁରୁତର ସମାଲୋଚନା କଲେ । ତଥାପି ରାଜା ସେଥିରେ ସନ୍ତୁଷ୍ଟ ନହୋଇ ସ୍ୱୟଂ ଗଣନା କଲେ । କିନ୍ତୁ ଫଳରେ ସେହି ଗୋଟିଏ ଲୋକର ଅଭାବ ପରିଲକ୍ଷିତ ହେଲା । ଏତଦ୍ଦ୍ୱାରା ରାଜାଙ୍କର ମନ ବିକ୍ଷିପ୍ତ ହୋଇଗଲା । ମାତ୍ର ପଣ୍ଡିତମାନେ ଅଧିକ ଦୃଢ଼ନିଶ୍ଚିତ ହୋଇ ତୀବ୍ର ସମାଲୋଚନା କଲେ । ଗଣନାରେ ଅମେଳ ଏବଂ ପଣ୍ଡିତମାନଙ୍କର କଟୂ ସମାଲୋଚନା ଯୋଗୁଁ ମିହିର ସ୍ତବ୍ଧ ଏବଂ ଅପ୍ରତିଭ ହୋଇଗଲେ ।

ବିଦ୍ୟା କୁତ୍ରାପି ନିଷ୍ଫଳା ନୁହେ । ସେ ସର୍ବଦା ସମ୍ମାନର ଜନନୀ । ଯେ ଯେତେ ସେ ସରସ୍ୱତୀଙ୍କର ସେବା କରିପାରନ୍ତି, ସେ

ତେବେତ ତାହାଙ୍କର ପ୍ରସାଦ ଲାଭ କରିପାରିଅଛୁ । ପୁଣି ସତ୍ୟ ସ୍ୱତଃ ପ୍ରକାଶ ଏବଂ ଅସତ୍ୟର ଅପସାରଣ ସୁନିଶ୍ଚିତ । ଷମା ରାଜସଭାର ଅନତିଦୂରରେ ଦଣ୍ଡାୟମାନ ହୋଇ ସଭାସଦମାନଙ୍କର ମିହିର ପ୍ରତି ଆକ୍ରୋଶ ଏବଂ ଜ୍ୟୋତିଃଶାସ୍ତ୍ର ପ୍ରତି ଅନାସ୍ଥା ଶୁଣି ବିଷଧର ଫଣିନୀ ତୁଲ୍ୟ ତେଜରେ ଜଳୁଥିଲା । ସେ ମିହିରଙ୍କୁ ଅପ୍ରତିଭ ହୋଇଯିବାର ଦେଖି ଗଣନା କରି ଉଚ୍ଚକଣ୍ଠରେ କହିଲା— କିଏ କହେ—ଆମ୍ଭେମାନେ ଅପଦସ୍ତ ? କିଏ କହେ—ଏଶାସ୍ତ୍ର କାଳ୍ପନିକ ! ଦେଖାଯାଉ—ସେ ମଣ୍ଡପ ନିକଟସ୍ଥ କାପାଳିକର କୁଟୀରରେ ଗୋଟିଏ ଅନ୍ଧ ବାଳକ ଅଛି କି ନା ? ପ୍ରକୃତରେ ସେହି କାପାଳିକ ବେତାଳ-ସାଧନ ଉଦ୍ଦେଶ୍ୟରେ ଗୋଟିଏ ଅନ୍ଧ ବାଳକ ଅପହରଣ କରି ଲୁକ୍କାୟିତ-ଭାବରେ ନେଇଥିଲା । ଷମାର ନିର୍ଦ୍ଦେଶରେ ଅନୁସନ୍ଧାନ କରିବାରେ କାପାଳିକ ନିକଟରେ ଗୋଟିଏ ଅନ୍ଧ ବାଳକ ଦେଖାଗଲା । ବର୍ତ୍ତମାନ ମିହିର— ଗଣନା ଯେ ଅଭ୍ରାନ୍ତ, ଏହା ପ୍ରମାଣିତ ହୋଇଗଲା । ଏଥିରେ ପଣ୍ଡିତ ମାନଙ୍କର ମୁଖ ବିବର୍ଣ୍ଣ ହୋଇଗଲା । ବିଶେଷରେ ବରାହ ନିସ୍ତେଜ ହୋଇପଡ଼ିଲେ । ତାହାଙ୍କର ନୈରାଶ୍ୟ ଘନୀଭୂତ ହୋଇଆସିଲା । କିନ୍ତୁ ରାଜା ବିକ୍ରମ ଯତ୍‌ପରୋନାସ୍ତି ଆନନ୍ଦ ଲାଭକଲେ ଏବଂ ସେହି ଦୁହିଙ୍କର ଚର୍ଚ୍ଚା ନିମନ୍ତେ ବହୁତ ବ୍ୟବସ୍ଥା କରିବାକୁ ଆଦେଶ ଦେଲେ ।

ସମ୍ମାନ ଆକାଂକ୍ଷା ପ୍ରତ୍ୟେକର ସ୍ୱଭାବସିଦ୍ଧ । ସୁତରାଂ ଲୋକର କର୍ମପ୍ରେରଣା ବଳବତୀ ହୁଏ । ଏହି ସମ୍ମାନ ଲାଳସାରେ ଲୋକ ବେଳେ ବେଳେ ସର୍ବସ୍ୱ ତ୍ୟାଗ କରିବାରେ କୁଣ୍ଠିତ ହୁଏନାହିଁ । କିନ୍ତୁ ଯେ ସଦସତ୍ ବିଚାର ନକରି ସମ୍ମାନ କାମନା କରେ, ସେ ପ୍ରକୃତ ସମ୍ମାନର ଅଧିକାରୀ ହୋଇ ପାରେ ନାହିଁ । ସତ୍‌କର୍ମସାଧନ ସମ୍ମାନର

ଜନକ । ସାଧକର ମନରେ ଫଳାକାଙ୍କ୍ଷା ରହିଲେ ପ୍ରକୃତ ସମ୍ମାନ-ଲାଭରେ ବାଧା ସଂଘଟିତ ହୋଇଥାଏ । ସୁତରାଂ ଯେ ଫଳ ପ୍ରତ୍ୟାଶୀ ନହୋଇ କର୍ମ ସାଧନ କରେ, ସେହି ଲୋକହିଁ ମଧ୍ୟରେ ମହନୀୟ ହୋଇଥାଏ ।

ବସନ୍ତମିହିର ଏପର୍ଯ୍ୟନ୍ତ ମିହିରକୁ ନିଜ ପୁତ୍ର ବୋଲି ଜାଣିପାରିନାହାନ୍ତି । ତାହା ହୋଇଥିଲେ ସେ ମର୍ତ୍ତ୍ୟରେ ବୈକୁଣ୍ଠ ଉପଭୋଗ କରୁଥାନ୍ତେ । ମିହିର ବର୍ତ୍ତମାନ ତାହାଙ୍କର ବୈରୀ । କାରଣ ସେ ଭାବୁଛନ୍ତି—ତାହାର ଯୋଗେ ତାହାଙ୍କର ପ୍ରତିପତ୍ତିରେ ବ୍ୟାଘାତ ଘଟିବ । ସୁତରାଂ ବସନ୍ତ ସମ୍ମାନଲାଳସାରେ ଅନ୍ଧୀଭୂତ ହୋଇ ନବାଗତ ପଣ୍ଡିତ ଦମ୍ପତୀଙ୍କୁ ବୈରୀ ସ୍ଥିର କରି ସେ ଦୁହିଁଙ୍କର ଅପସାରଣ ନିମନ୍ତେ ଉପାୟ ଚିନ୍ତା କରିବାରେ ଦିନୁଁଦିନ କ୍ଷୀଣ ଏବଂ ଦୁର୍ବଳ ହେବାକୁ ଲାଗିଲେ ।



# ଚତୁର୍ଦ୍ଦଶ ପରିଚ୍ଛେଦ ।

ମିହିର ଏବଂ କ୍ଷମା ରାଜପରିଷଦରେ ପ୍ରଥମପ୍ରବେଶସମୟରୁ ବରାହମିହିରଙ୍କୁ ନିଜର ପିତା ବୋଲି ଜାଣିପାରିଅଛନ୍ତି । ପିତାଙ୍କ ନିକଟରେ ପରିଚୟ ଦେବା ନିମନ୍ତେ ମିହିର ପ୍ରସ୍ତାବ କରିଥିଲେହେଁ ସେଥିନିମନ୍ତେ ବ୍ୟଗ୍ର ହେବାକୁ କ୍ଷମା ନିଷେଧ କରିବାରୁ ତାହା ହୋଇପାରିନଥିଲା । କିନ୍ତୁ କି ପ୍ରତ୍ୟକ୍ଷ, କି ପରୋକ୍ଷ, ସର୍ବଦା ପତିପତ୍ନୀ ଦୁହେଁ ପିତୃଦେବଙ୍କୁ ଭକ୍ତି କରିବାରେ ଲବମାତ୍ର ତ୍ରୁଟି କରୁନଥିଲେ ।

ବରାହମିହିର ସମ୍ମାନ ହାନି ଆଶଙ୍କାରେ ଅହାରନିଦ୍ରାଶୂନ୍ୟ ହୋଇ ନିଜର ଭବିତବ୍ୟସମ୍ମାନକଣ୍ଟକ ସେହି ପତିପତ୍ନୀ ଦୁହିଙ୍କର ଅମଙ୍ଗଳ ନିମନ୍ତେ ନାନା ଉପାୟ ଅନୁସନ୍ଧାନ କରିବାକୁ ଲାଗିଲେ । ବରାହଙ୍କର ବାସଗୃହ ସମ୍ମୁଖରେ ଗୋଟିଏ ଅତି ପ୍ରାଚୀନ ଭଗ୍ନ ଅଟ୍ଟାଳିକା ଥିଲା । ବହୁକାଳାବଧି ତାହା ଲୋକଶୂନ୍ୟ । ବେଳେ ବେଳେ ନିଶୀଥରେ ତହିଁରୁ ଗୋଟାଏ ପ୍ରକାର ଭୌତିକଶବ୍ଦମାତ୍ର ଶୁଣାଯାଏ । ବରାହ ତାହା ବହୁବାର ଶୁଣି ପାରିଅଛନ୍ତି । ସେ ସେହି ଶବ୍ଦ ଶକୁନରୁ ଅନୁମାନ କଲେ—ସମ୍ଭବତଃ ଏହି ଅଟ୍ଟାଳିକାରେ କୌଣସି ମାନବର ସଂସ୍ରବ ଘଟିଲେ, ଅଟ୍ଟାଳିକା ତାହାର ଉପରେ ପତିତ ହେବ । ନଚେତ୍ କୌଣସି ପ୍ରକାରେ ନରବଳି ନପାଇବା ପର୍ଯ୍ୟନ୍ତ ଭଗ୍ନସୌଧୋତ୍ଥିତ ଭୌତିକ କାଣ୍ଡର ଉପଶମ ଅସମ୍ଭବ । ସେ ତାହାକୁ ଅମୋଘ ଉପାୟ ମନେକରି ଜନୈକ ପ୍ରିୟତମ ଶିଷ୍ୟ ସହିତ ପରାମର୍ଶ କଲେ । ଶିଷ୍ୟ ଗୁରୁଦେବଙ୍କ

ପ୍ରସ୍ତାବରେ ଏକମତ ହେବାରୁ ନିର୍ଦ୍ଧାରିତ ଦିବସରେ ଷମା ଏବଂ ମିହିରଙ୍କୁ ରାତ୍ରଭୋଜନ ନିମନ୍ତେ ନିମନ୍ତ୍ରଣ କରାଗଲା ଏବଂ ଦୁହିଙ୍କର ବିଶ୍ରାମ ନିମନ୍ତେ ପ୍ରୋକ୍ତ ଭଗ୍ନ ପ୍ରାସାଦରେ ଶଯ୍ୟାରଚନା ମଧ୍ୟ କରାଗଲା ।

ପିତୃଭକ୍ତ ପତିପତ୍ନୀ ଜୀବନରେ ଅନନୁଭୂତ ଏହି ଅଭିନବ ପିତୃନିମନ୍ତ୍ରଣ ଲାଭ କରି ଯଥୋପଯୋଗନାସ୍ତି ଆନନ୍ଦିତ ହେଲେ । ନିମନ୍ତ୍ରଣ ଲାଭସମୟରୁ ଉଭୟଙ୍କର ମନ ଅନ୍ୟ କୌଣସି କାର୍ଯ୍ୟରେ ଆକୃଷ୍ଟ ନହୋଇ କେବଳ ନିମନ୍ତ୍ରଣ ବେଳାର ପ୍ରତୀକ୍ଷା କରିବାକୁ ଲାଗିଲା । ଯଥାସମୟରେ ଦୁହେଁ ପିତୃଗୃହରେ ଉପସ୍ଥିତ ହେଲେ ଏବଂ ପିତୃଦେବଙ୍କ ଚରଣତଳେ ସାଷ୍ଟାଙ୍ଗ ପ୍ରଣିପାତ କରି ଆଳାପରେ ପ୍ରବୃତ୍ତ ହେଲେ । କିନ୍ତୁ ଅଜ୍ଞାତ ପୁତ୍ର ଏବଂ ପୁତ୍ରବଧୂର ପ୍ରଣାମ ବା ଆଳାପରେ ବରାହଙ୍କର ତୃପ୍ତି ହେଲନାହିଁ । ସେ କେବଳ ଅତିଥି ଦ୍ୱୟଙ୍କର ଶୀଘ୍ର ଭୋଜନ ଏବଂ ଶୀଘ୍ର ଶୟନ ନିମନ୍ତେ ଉଦ୍ବିଗ୍ନ । ସୁତରାଂ ତାହାଙ୍କର ନିର୍ଦ୍ଦେଶରେ ଅତିଥିଦ୍ୱୟଙ୍କର ଭୋଜନ ସମାହିତ ହୋଇଗଲା । ଅନନ୍ତର ସେହି ଅତିଥି ପତିପତ୍ନୀ ପୂର୍ବୋକ୍ତ ଭଗ୍ନସୌଧରେ ରଚିତ ଶଯ୍ୟାରେ ଶୟନ କରିବା ନିମନ୍ତେ, ନିଃସନ୍ଦେହ ପ୍ରେରିତ ହେଲେ ।

ଭଲହେଉ, ମନ୍ଦ ହେଉ, କାମନା ପୂର୍ଣ୍ଣ ନହେବା ପର୍ଯ୍ୟନ୍ତ କାମନାଗ୍ରସ୍ତ ଲୋକର ଶାନ୍ତି ଅସମ୍ଭବ । ଅତିଥିଙ୍କର ଆଗମନ, ଭୋଜନ ଏବଂ ଆଳାପ, କାହିଁରେ ବରାହଙ୍କର ମନ ସନ୍ତୁଷ୍ଟ ନୁହେ । ଶୀଘ୍ର ଅଟ୍ଟାଳିକାପତନଯୋଗେ ସେମାନଙ୍କର ଅମଙ୍ଗଳଦର୍ଶନ ହିଁ ତାହାଙ୍କର ଏକମାତ୍ର ଲକ୍ଷ୍ୟ ଥିଲା । ଏତଦର୍ଥେ ଅତିଥିଦ୍ୱୟ

ନିରୁପିତ ଶଯ୍ୟାରେ ବିଶ୍ରାମ କରିବାକୁ ଲାଗିଲେ । ଏଣେ ବୃଦ୍ଧ ବଣିକ ଉନ୍ନିଦ୍ର ହୋଇ ଉନ୍ମୁକ୍ତ ବାତାୟନମାର୍ଗରେ କଳ୍ପିତ ଦୁର୍ଘଟନାକୁ ଆଶାବିସ୍ଫାରିତ ଚକ୍ଷୁରେ ଚାହିଁ ରହିଥାନ୍ତି । କିନ୍ତୁ ଭାଗ୍ୟଂ ଫଳତି ସର୍ବତ୍ର, କେହି ତାହାର ରୋଧକ ହୋଇ ନପାରେ । ଦେଖୁ ଦେଖୁ ଶାୟିତ ଯୁବକ ଯୁବତୀଙ୍କ ଉପରେ କେତେକ ଉଜ୍ଜ୍ୱଳରତ୍ନର ବୃଷ୍ଟି ହେଲା । ରତ୍ନର ସମୁଜ୍ଜ୍ୱଳ କାନ୍ତିରେ ପ୍ରକୋଷ୍ଠ ଆଲୋକିତ ହେଲା । ଏଥିରେ ଅତିଥିଦ୍ୱୟ ବିସ୍ମିତ ହେଲେ । କିନ୍ତୁ ତେଣେ ବୃଦ୍ଧ ବଣିକ ମର୍ମାହତ ।

ବହୁକାଳରୁ ପ୍ରୋଥିତ ସ୍ୱର୍ଣ୍ଣରତ୍ନ ଯୋଗେ ଏହିପରି କାଣ୍ଡ ସଂଘଟିତ ହୋଇଥାଏ । ପ୍ରୋକ୍ତ ଅଟ୍ଟାଳିକାରେ ସେହି ସବୁ ରତ୍ନ ବହୁକାଳାବଧି ପ୍ରୋଥିତ ହୋଇଥିଲା । ସୁଲକ୍ଷଣାକାନ୍ତ ଯୁବକଯୁବତୀଙ୍କର ସମ୍ପର୍କରୁ ସେ ସମସ୍ତ ରତ୍ନର ଈଦୃଶ ପରିଣତି ସଂଘଟିତ ହେଲା ।

ଭାଗ୍ୟଧର ଦମ୍ପତି ଇତସ୍ତତଃ ବିକ୍ଷିପ୍ତ ରତ୍ନଚୟ ସଂଗ୍ରହ କରି ସୁଖରେ ନିଦ୍ରିତ ହେଲେ । କିନ୍ତୁ ବଣିକ ନାନା ଦୁଶ୍ଚିନ୍ତାରେ ରାତ୍ରି ଯାପନ କଲେ । ଏଥିରେ ବଣିକଙ୍କର ଦୃଢ ଧାରଣା ହେଲା ଯେ—ଏ ଅମର ଶତ୍ରୁର ଧ୍ୱଂସ ମୋ ପକ୍ଷରେ ଅସମ୍ଭବ, ସୁତରାଂ ଜମାହର ଶୁଶ୍ରୂଷା ମଧ୍ୟ ସୁଦୂର ପରାହତ ।



# ପଞ୍ଚଦଶ ପରିଚ୍ଛେଦ ।

ରଜନି ପ୍ରଭାତ ହେଲା । ଅତିଥି ଦମ୍ପତୀ ସଂଗୃହୀତ ରତ୍ନସକଳ ପିତୃଦେବଙ୍କୁ ଅର୍ପଣ କଲେ । କିନ୍ତୁ ବହୁରତ୍ନଲାଭରେ ସୁଦ୍ଧା ପିତାଙ୍କର ତିଳମାତ୍ର ଆନନ୍ଦ ହେଲା ନାହିଁ । ବରଂ ଏତଦ୍ଦ୍ୱାରା ତାହାଙ୍କର ବିଷାଦ ନିବିଡ଼ତର ହେଲା । ଏତଦ୍ଦର୍ଶନରେ ଅତିଥି—ହୃଦୟ ବିସ୍ମିତ ହୋଇ ଜିଜ୍ଞାସା କଲେ— ଗୁରୁଦେବ ! ଆପଣଙ୍କର ଏତାଦୃଶ ବିଷାଦର କାରଣ କଣ ? ବିଷାଦର କାରଣ ଯେ ପ୍ରଶ୍ନକର୍ତ୍ତା ଅତିଥି, ଏହା ତ ଅତିଥିଙ୍କର ଅବିଦିତ । ପୁଣି ଅଧିକ ବିଷାଦର କାରଣ ଯେ ଅତିଥିଙ୍କ ବିନାଶ ନିମନ୍ତେ ପ୍ରଯୁକ୍ତ ଷଡ଼ଯନ୍ତ୍ରର ବୈଫଲ୍ୟ, ଏହା ମଧ୍ୟ ଅତିଥିଙ୍କର ଅଗୋଚର । ସେଥିରେ ପୁଣି ସୌଭାଗ୍ୟର ଜ୍ୱଳନ୍ତ ନିଦର୍ଶନ ରୂପେ ଅତିଥିଙ୍କ ଉପରେ ଆକସ୍ମିକ ରତ୍ନବୃଷ୍ଟି, ଏହା ସର୍ବାପେକ୍ଷା ଅଧିକ ବିଷାଦରେ ବିପ୍ରଙ୍କ ମନୋରାଜ୍ୟକୁ ପ୍ଲାବିତ କରିଦେଇଅଛି । ଏଥିରୁ କେଉଁ କାରଣଟି ଅବା ଅତିଥିଙ୍କ ସମକ୍ଷରେ ବିପ୍ରଙ୍କର ପ୍ରକାଶ୍ୟ ହୋଇପାରେ ? ସୁତରାଂ ପ୍ରଶ୍ନକର୍ତ୍ତାଙ୍କର ଉତ୍ତର ଲାଭ ସର୍ବଥା ଅସମ୍ଭବ ହେଲା । ସେ ଦୁହେଁ ସମୀଚୀନ ଉତ୍ତର ଲାଭ କରିବାର ଜିଜ୍ଞାସାକାଙ୍କ୍ଷାର ପ୍ରେରଣାରେ ତଦୀୟ ପରିବାର ଗତ କତିପୟ ପ୍ରଶ୍ନ ଉପସ୍ଥାପିତ କଲେ । ମିହିର ଉତ୍ତର—କ୍ରମରୁ ପିତାଙ୍କୁ ଦାରାପତ୍ୟଶୂନ୍ୟ ଅବଗତ ହୋଇ କତିପୟ ପୁତ୍ରଗତ ପ୍ରଶ୍ନ ଜିଜ୍ଞାସା କଲେ । ମାତ୍ର ପୁତ୍ରର ବିଷୟ ଉତ୍ଥାପିତ ହେବାରୁ ବରାହ ଶୋକାକୁଳ ହୋଇପଡ଼ିଲେ । କାରଣ ତାହାଙ୍କର ଦୃଢ଼ ଧାରଣା ହୋଇଥିଲା ଯେ ଦଶବର୍ଷ ବହୁଦିନରୁ ଅତୀତ

ହୋଇପାଇଅଛି । ସୁତରାଂ ତ୍ୟକ୍ତ ପୁତ୍ରର ବିଦ୍ୟମାନତା ଇହଂ ଲୋକରେ ଅସମ୍ଭବ । ମିହିର ପିତୃଦେବଙ୍କର ପ୍ରମାଦପୂର୍ଣ୍ଣ ପୁନମୃତ୍ୟୁ— ଧାରଣା ଅନୁଭବ କରି ତହିଁର ମୂଳକାରଣ ଜାଣିବା ଉଦ୍ଦେଶ୍ୟରେ ପୁନଃ ପ୍ରଶ୍ନ କରିବାକୁ ବାଧ୍ୟ ହୋଇଥିଲେ । କାରଣ ପିତା ଯେ ଗଣନାପ୍ରମାଦହେତୁ ପୁତ୍ରତ୍ୟାଗ କରିଥିଲେ, ଏହା ତାହାଙ୍କର ଅଜ୍ଞାତ । ପିତା ବରାହ ବହୁ କଷ୍ଟରେ ଭଗବତ୍ କୃପାରୁ ପୁତ୍ରପ୍ରାପ୍ତି ଏବଂ ଅଳ୍ପାୟୁଷ ହେତୁରୁ ତାହାର ତ୍ୟାଗର ଉଲ୍ଲେଖ କରିଥିଲେ ।

ବର୍ତ୍ତମାନ ପିତାଙ୍କର ପ୍ରମାଦ ବିଷୟରେ ମିହିରଙ୍କର ସନ୍ଦେହ ଦୃଢ଼ୀଭୂତ ହେଲା । ସେ ବୁଝିଲେ—ମୁନେରପି ମତିଭ୍ରମଃ, ସୁତରାଂ ପିତାଙ୍କର ଭ୍ରମ ହେବା ଅସ୍ୱାଭାବିକ ନୁହେ । କିନ୍ତୁ କି ପ୍ରକାରେ ଭ୍ରମ ହୋଇଅଛି, ତାହା ଜାଣିବା ନିମନ୍ତେ ତାହାଙ୍କର କୌତୂହଳ ହେବାରୁ ସେ ପିତାଙ୍କୁ ତ୍ୟକ୍ତ ପୁତ୍ରର କୋଷ୍ଠିପାତ କରିବାକୁ ପ୍ରାର୍ଥନା କଲେ । କିନ୍ତୁ ପ୍ରଥମେ ସେ ଶୋକୋଦ୍ଦୀପକ ଅଭିନୟ କରିବାକୁ ଏକାନ୍ତ ଅନିଚ୍ଛୁକ ହୋଇଥିଲେ । ମାତ୍ର ମିହିରଙ୍କର ଆଗ୍ରହାତିଶଯ୍ୟଯୋଗୁଁ କୋଷ୍ଠିପାତ କରି ସ୍ୱୟଂ ମଧ୍ୟ ଗଣନା ସାଧନ କଲେ । ବର୍ତ୍ତମାନ ବରାହଙ୍କର ସୌଭାଗ୍ୟର ଶୁଭମୁହୂର୍ତ୍ତ ଉପସ୍ଥିତ । ସୁତରାଂ ବର୍ଦ୍ଧିତଦେଶରେ ଗଣନାଲବ୍ଧ ଫଳ ଅବଶ୍ୟ ଅଭ୍ରାନ୍ତ ହେବାର କଥା । ତେଣୁ ଯେଉଁ ବରାହଙ୍କ ଗଣନାରେ, ଯେଉଁ ବରାହଙ୍କ ଅଙ୍କପାତରେ ପୁତ୍ରର ପରମାୟୁ ଦଶବର୍ଷ ହୋଇଥିଲା, ବର୍ତ୍ତମାନ ସେହି ବରାହଙ୍କ ଗଣନାରେ, ସେହି ବରାହଙ୍କ ହାତରେ ପୁତ୍ରର ପରମାୟୁ ଶତବର୍ଷ ଦେଖାଗଲା ! ଏତଦ୍ଦର୍ଶନରେ ବରାହ ସଙ୍ଗେ ସଙ୍ଗେ ସଂଜ୍ଞାହୀନ ହୋଇ ଭୂଶାୟୀ

ହେଲେ । ମିହିର ଏବଂ କ୍ଷମା ଉଦ୍‌ବିଗ୍ନ ହୋଇ ଶୀତଳୋପଚାର କରି ପିତାଙ୍କର ଚୈତନ୍ୟ ସମ୍ପାଦନ କଲେ ଏବଂ କହିଲେ— ଗୁରୁଦେବ ! ବର୍ତ୍ତମାନ ଧୈର୍ଯ୍ୟଧାରଣ କରନ୍ତୁ, ନୈରାଶ୍ୟର କୌଣସି କାରଣ ନାହିଁ । ଯଦି ପୁତ୍ର ଶତାୟୁ, ତେବେ ଗୃହସ୍ଥ ହେଉ, ତ୍ୟକ୍ତ ହେଉ, ମର୍ତ୍ତ୍ୟରେ ଯତ୍ରକୁତ୍ରାପି ଜୀବିତ ଅଛି । ବରଂ ଆପଣଙ୍କର ଗୃହତ୍ୟାଗପରଠାରୁ ତାହାର କି କି ଅବସ୍ଥା ହୋଇଅଛି ଏବଂ ସେ ବର୍ତ୍ତମାନ କେଉଁଠି, ଏହା ଜାଣିବା ନିମନ୍ତେ ଗଣନା କର୍ତ୍ତବ୍ୟ । ତାହାହେଲେ ସନ୍ଦେହ ଦୂରୀଭୂତ ହୋଇଯିବ ଏବଂ କ୍ରମଶଃ ଆଶା ଉଜ୍ଜ୍ୱଳ ହେବ ।

ମୋହଗ୍ରସ୍ତ ପିତା ଶୁଭବୁଦ୍ଧି ଅଜ୍ଞାତ ପୁତ୍ରର ପ୍ରବର୍ତ୍ତିନାରେ ଆଶ୍ୱସ୍ତ ହୋଇ କ୍ରମଗଣନାରେ ପ୍ରବୃତ୍ତ ହେଲେ । କ୍ରମଗଣନାରୁ ଜଣାଗଲା—ସିପ୍ରାରେ ଭାସମାନ ପୁତ୍ର ନିରାପଦରେ ସମୁଦ୍ରକୁ ଭାସିଯାଇ କ୍ରମଶଃ ସିଂହଳର ଉପକୂଳବର୍ତ୍ତୀ ହେବା ପରେ ବନବାସୀମାନଙ୍କଦ୍ୱାରା ସିଂହଳେଶ୍ୱରଙ୍କୁ ଉପହୃତ ହୋଇଅଛି । ତଦନନ୍ତର ତାହାର ସେଠାରେ ଶିକ୍ଷା ଏବଂ ରାଜକନ୍ୟା ସହିତ ବିବାହ ସମାହିତ ହୋଇଯାଇଅଛି । ବର୍ତ୍ତମାନ ସେ ଭାରତରେ, ଏହି ଉଜ୍ଜୟିନୀରେ ଉପସ୍ଥିତ । ପିତା ଗଣନାକ୍ରମରେ ପୁତ୍ରର କ୍ରମଶୁଭଫଳ ସନ୍ଦର୍ଶନକରି ଆଶା ଏବଂ ଆନନ୍ଦରେ ପ୍ରଫୁଲ୍ଲ ହେଉଥିଲେ । ଅନ୍ଧର ଦୃଷ୍ଟିଶକ୍ତି ଲାଭରେ ଯେପରି ଅପୂର୍ବ ଆନନ୍ଦଲାଭ ହୁଏ, ପୁତ୍ରର କୁଶଳ ଜାଣିବାରେ ବରାହଙ୍କର ତଦ୍‌ବତ୍ ଆନନ୍ଦ ହୋଇଥିଲା । ସେ କିଯତ୍ କାଳ ନିମନ୍ତେ ଆତ୍ମବିସ୍ମୃତ ହୋଇଯାଇଥିଲେ । ଯେତେବେଳେ ଜଣାଗଲା—ପୁତ୍ର ଉଜ୍ଜୟିନୀରେ, ସେତେବେଳେ ସେ ଅତ୍ୟନ୍ତ ଅଧୀର ଏବଂ ବ୍ୟାକୁଳ ହୋଇ ଅନ୍ୱେଷଣ ନିମନ୍ତେ ବ୍ୟଗ୍ର ହୋଇ-

ପଢ଼ିଲେ । ମିହିର ପିତାଙ୍କର ପ୍ରବଳ ଅଧୀରତା ସନ୍ଦର୍ଶନ କରି ସାନ୍ତ୍ୱନା ଦେଇ କହିଲେ— ଗୁରୁଦେବ ! ଅଧୀରହେବା ଅନାବଶ୍ୟକ ଏବଂ ଅକ୍ଲାନ୍ତଭାବରେ ଅନୁସନ୍ଧାନ କରିବା ମଧ୍ୟ ନିଷ୍ପ୍ରୟୋଜନ । ଯେଉଁ ଗଣନା ଯୋଗେ ଏତାବତ୍ ଅବସ୍ଥା ଏବଂ ଶକୁନ ବିଶଦ ହୋଇ ପାରିଅଛି, ତାହାରି ଯୋଗେ ପୁତ୍ରର ଅବସ୍ଥିତି ଅନେକାଂଶରେ ଜଣାଯାଇ ପାରିବ । ଅତଏବ ଗଣନା କର୍ତ୍ତବ୍ୟ । ଭାଗ୍ୟବାନ୍ ପିତା ପୁନର୍ବ୍ବାର ଅଧୀଶପୁତ୍ରଙ୍କ ଗଣନା କରି ଯେତେବେଳେ ନିଜ ମୁଖରେ କହିଲେ— ସେ ବର୍ତ୍ତମାନ ଏହିଠାରେ, ସେତେବେଳେ ସଙ୍ଗେ ସଙ୍ଗେ ମିହିର କହିଲେ— ମୁଁ ପରା ଆପଣଙ୍କର ପୁତ୍ର ଏବଂ ଏ ଆପଣଙ୍କର ପୁତ୍ରବଧୂ । ମିହିରର ବାକ୍ୟ ସମାପ୍ତ ନ ହେଉଣୁ ପୁତ୍ରରଙ୍କ ପିତା ସୌଭାଗ୍ୟଶାଳୀ ପୁତ୍ରକୁ ଏବଂ ପୁତ୍ରବଧୂକୁ ଗାଢ଼ାଲିଙ୍ଗନ କରି ମନଃପ୍ରାଣ ଶୀତଳକଲେ । ତାହାଙ୍କର ଆନନ୍ଦାଶ୍ରୁଧାରରେ ପୁତ୍ର ଏବଂ ପୁତ୍ରବଧୂର ମସ୍ତକ ସିକ୍ତ ହୋଇଗଲା । ପୁତ୍ର ଏବଂ ପୁତ୍ରବଧୂ ପୁଲକପ୍ରାଣରେ ଅଶ୍ରୁ ବିସର୍ଜ୍ଜନ କରି ପିତାଙ୍କର ପାଦତଳେ ସାଷ୍ଟାଙ୍ଗ ପ୍ରଣିପାତ କଲେ । ଏସ ଦୃଶ୍ୟ ଅତ୍ୟନ୍ତ ଅଭିନବ । ଧନ୍ୟ ପିତା ପୁତ୍ର ସମ୍ବନ୍ଧ ! ଯେ ଅଟେରମାତ୍ର ଏହିପରି ଅଶ୍ରୁବିସର୍ଜ୍ଜନର ସୁଯୋଗ ଲାଭ କରିପାରିଅଛି, ତାହାର ଜୀବନ ଧନ୍ୟ । ଆଜି ମିହିରର ଜୀବନ ସାର୍ଥକ ହୋଇ ପାରିଅଛି । ପିତାପୁତ୍ରଙ୍କର ଏହା ଯୁଗାନ୍ତର । ବରାହମନ୍ଦିର ଆଜି ଲକ୍ଷ୍ମୀନିବାସ; ଲୀଳା ନିକେତନ । ବରାହ ଆଜି ମର୍ତ୍ତ୍ୟରେ ବୈକୁଣ୍ଠ-ସୁଖର ଅଧିକାରୀ । ଧନ୍ୟ ଜଗତ୍‌ପିତା ଜଗଦୀଶ୍ବର । ଧନ୍ୟ ତାହାଙ୍କର ମହିମା ! ବରାହ ଯାହାକୁ ପରମ ଶତ୍ରୁ ମନେକରି ତାହାର ଧ୍ୱଂସ ନିମନ୍ତେ ଅନୁକ୍ଷଣ ଯତ୍ନଶୀଳ ହେଉଥିଲେ, ସେ ପୁଣି ଅଳ୍ପ ସମୟ—

ପରେ ପ୍ରାଣାଧିକ ପୁତ୍ର ବୋଲି ପ୍ରମାଣିତ ହୋଇ ଅପୂର୍ବ ଆନନ୍ଦର କାରଣ ହେଲା । ଏରହସ୍ୟ ବୈଚିତ୍ର୍ୟରେ କିଏ ଆତ୍ମବିସ୍ମୃତ ନହେବ ?

ଏ ଅପୂର୍ବ ସମ୍ବାଦ ବିଦ୍ୟୁଦ୍‌ଗତିରେ ଉଜ୍ଜୟିନୀରେ ବ୍ୟାପ୍ତ ହୋଇଗଲା । ନଗରର ଆବାଲବୃଦ୍ଧବନିତା ବିସ୍ମୟ ଏବଂ ଆନନ୍ଦରେ ଅଭିଭୂତ ହୋଇଗଲେ । ରାଜା ବିକ୍ରମାଦିତ୍ୟ ମଧ୍ୟ କ୍ଷଣବିଳମ୍ବ ନକରି ହର୍ଷୋତ୍ଫୁଲ୍ଲହୃଦୟରେ ବରରୁଙ୍କର ଦ୍ୱାରସ୍ଥ ହୋଇ ବୃଦ୍ଧ ପଣ୍ଡିତଙ୍କୁ ଅଭିବାଦନ ଜ୍ଞାପନ କଲେ ।



# ଷୋଡ଼ଶ ପରିଚ୍ଛେଦ ।

ପତ୍ନୀବିୟୋଗ ଏବଂ ପୁତ୍ରବିସର୍ଜ୍ଜନ ଦିବସରୁ ବସିଷ୍ଠଙ୍କର ଗୃହ ଏବଂ ସଂସାର ଏପର୍ଯ୍ୟନ୍ତ ଶୁଷ୍କ ନୀରସ ମରୁତୁଲ୍ୟ ପ୍ରାଣରେ ନୈରାଶ୍ୟର ସଞ୍ଚାର କରୁଥିଲା । ବସିଷ୍ଠ ସେଥିରେ ଆତପକ୍ଳାନ୍ତ ତୃଷାତୁର ମରୁଯାତ୍ରୀତୁଲ୍ୟ ଅନୁକ୍ଷଣ ହାହତୋଽସ୍ମି ହୋଇ କଥଞ୍ଚିତ ଗତ କରୁଥିଲେ । ଭଗବାନଙ୍କର ସୃଷ୍ଟି ବିଚିତ୍ର, ଲୀଳା ଅଚିନ୍ତ୍ୟ, ଦୟା ଅନନ୍ତ । ଭବିଷ୍ୟତ ମାନବ ପକ୍ଷରେ ଅନ୍ଧକାରମୟ ହେଲେହେଁ ସ୍ରଷ୍ଟାଙ୍କ ସମକ୍ଷରେ ଉଜ୍ଜ୍ୱଳ । ଏପରି ପିତାପୁତ୍ର ମିଳନ ହେବବୋଲି କେହି କେବେ ସ୍ୱପ୍ନରେ ସୁଦ୍ଧା ଆଶା କରିଥିଲା କି ? ପୁତ୍ର ଅଦ୍ୟ ଜୀବଦ୍ଦଶାରେ ଅଛି, ଏ ଆଶା ବସିଷ୍ଠଙ୍କର ଥିଲା କି ? କିନ୍ତୁ ସେହି ମଙ୍ଗଳମୟଙ୍କର ବିଚିତ୍ର ଇଙ୍ଗିତରେ ସେ ସମସ୍ତ ସମ୍ଭବ ହୋଇପାରିଅଛି । ଆଜି ବସିଷ୍ଠମନ୍ଦିର ନନ୍ଦନକାନନ, ସିନ୍ଧୁର ଏବଂ କ୍ଷମା ତହିଁରେ ସଦ୍ୟଃପ୍ରସ୍ଫୁଟିତ ପାରିଜାତ କୁସୁମ । ସେ ଦୁହିଙ୍କର ଗୁଣସୌରଭରେ ସମଗ୍ର ଉତ୍କଳଭୂମି ଆଜି ଆମୋଦିତ ।

କୁସୁମର ସୌରଭ କୁସୁମରେ ଆବଦ୍ଧ ରହିପାରେ ନାହିଁ । ତାହା ଚତୁର୍ଦ୍ଦିଗରେ ପ୍ରସାରିତ ହୁଏ । ଲୋକସକଳ ସୌରଭରେ ମୁଗ୍ଧ ହୋଇ ପୁଷ୍ପର ଆଦର କରନ୍ତି । ବସିଷ୍ଠଙ୍କର ପୁତ୍ର ଏବଂ ପୁତ୍ର-ବଧୂ ଜ୍ୟୋତିର୍ବିଦ୍ୟାରେ ଧୁରନ୍ଧର ପଣ୍ଡିତ, ଏହା ରାଜସଭାପରୀକ୍ଷାରେ ପ୍ରମାଣିତ ଏବଂ ପ୍ରସାରିତ । ଅନନ୍ତର ପିତାଙ୍କର ଗଣନାପ୍ରମାଦ ପ୍ରଦର୍ଶନରେ ଅଧିକ ବିଶଦ । ସୁତରାଂ ପତିପତ୍ନୀ ଦୁହିଙ୍କର ପ୍ରଶଂସାରେ ପୁରପଲ୍ଲୀ ମୁଖରିତ । ରାଜସମ୍ମାନ ଏବଂ ଧନ ଧାନ୍ୟ ରାଜନିମନ୍ତ୍ରଣରେ ମଧ୍ୟ ପଣ୍ଡିତ ଦମ୍ପତୀ ବିଶେଷ ସମ୍ମାନିତ ।

# ସଭା

ପୂର୍ବେ ବିଦ୍ୟାଚର୍ଚ୍ଚା, ବିଦ୍ୟାର ପ୍ରସାର ଏବଂ ବିଦ୍ୟାର ଗ୍ରାହକତା ରାଜାମାନେ ସ୍ୱତଃପ୍ରବୃତ୍ତ ହୋଇ ସମ୍ପାଦନ କରୁଥିଲେ । କାର୍ଯ୍ୟତଃ ରାଜାମାନେହିଁ ବିଦ୍ୟାର ନିୟାମକ ଥିଲେ । ପ୍ରାୟଶଃ ପ୍ରତ୍ୟେକ ରାଜାଙ୍କର ବହୁ ବ୍ୟୁତ୍ପନ୍ନ କବି ପଣ୍ଡିତ ସମଳଂକୃତ ସଭା ଥିଲା । ସେହି ସଭା ସକଳ ବିଦ୍ୟାଚର୍ଚ୍ଚାର କେନ୍ଦ୍ରସ୍ଥଳ ଥିଲା । ସେଥିରେ କାବ୍ୟ, ନାଟକ, ଅଳଙ୍କାର, ଜ୍ୟୋତିଷ, ବୈଦ୍ୟକ, ଦର୍ଶନ ପ୍ରଭୃତି ସକଳ ବିଷୟର ଚର୍ଚ୍ଚା ହେଉଥିଲା । କେବଳ ସେତିକି ନୁହେଁ, ପାଦପୂରଣ ବା ସମସ୍ୟାସମାଧାନ ପ୍ରଭୃତି ଦ୍ୱାରା ପ୍ରତିଭାର ପରୀକ୍ଷଣ ମଧ୍ୟ ହେଉଥିଲା ।

ଷମା ମିହିରଠାରୁ ବିଦ୍ୟା ଏବଂ ପ୍ରତିଭାରେ ଜ୍ୟେଷ୍ଠ । ଅଧିକନ୍ତୁ ପ୍ରତ୍ୟୁତ୍ପନ୍ନମତିତ୍ୱ ଷମାର ଗୋଟିଏ ବିଶେଷତ୍ୱ । ଏହି ଗୁଣମାନଙ୍କ ଯୋଗୁଁ ସେ ସର୍ବତ୍ର ରାଜସଭାରେ ସର୍ବାଗ୍ରେ ସିଦ୍ଧାନ୍ତ ମୂଳକ ଉତ୍ତର ଦେବାରେ ତାହାର ବହୁମୁଖର ପ୍ରତିପତ୍ତି ଚତୁର୍ଦ୍ଦିଗରେ ପ୍ରବଳ ବେଗରେ ବିସ୍ତୃତି ଲାଭକଲା ଏବଂ ସେ ନିତ୍ୟ ପୁରସ୍କୃତ ଓ ସମ୍ମାନିତ ହେବାକୁ ଲାଗିଲା ।

ପ୍ରତିଷ୍ଠାଲାଳସା ପ୍ରତ୍ୟେକର ସ୍ୱଭାବସିଦ୍ଧ । ତାହାର ଯୋଗେ ମଧ୍ୟ ମନୁଷ୍ୟ ମନୁଷ୍ୟପଦବାଚ୍ୟ ହୋଇଥାଏ । ପୁଣି ସେହି ପ୍ରତିଷ୍ଠା— ଲକ୍ଷ୍ୟ ରଖିବାରୁ ଲୋକ ଅହରହ ପରିଶ୍ରମ କରେ । ତାହା ଏକପ୍ରକାର ମାଦକ । ସେ ମାଦକତାରେ ଯେଉଁମାନେ ଅଭିଭୂତ, ଅନେକଦା ସେମାନଙ୍କର ଅପନ୍ତା ସୁପନ୍ତା ଜ୍ଞାନ ମଧ୍ୟ ରହିପାରେ ନାହିଁ । ଯେ ଥରେମାତ୍ର ସେ ମାଦକ ଅନୁଭବ କରନ୍ତି, ସେ ବାରମ୍ବାର ସେଥି— ନିମନ୍ତେ ଲାଳାୟିତ ହେବ । କିନ୍ତୁ ସେଥିରେ ମୁହ୍ୟମାନ ହେବା ଅବାଞ୍ଛନୀୟ । ଯେଉଁମାନେ ମୁହ୍ୟମାନ ନହୋଇ କେବଳ କର୍ତ୍ତବ୍ୟ-

ସାଧନରେ ଏକାନ୍ତ, ସେହିମାନେହିଁ ମହାପୁରୁଷଙ୍କୁ ଲାଭ କରିଥାନ୍ତି ।

ବଶିଷ୍ଠମିଶ୍ରର ବର୍ତ୍ତମାନ ଅବସ୍ଥା । ସେ ନିଜୀୟ ଗୁଣକର୍ମ-ବଳରେ ଅଶେଷବିଧ ପ୍ରତିଷ୍ଠିତ । ତାହାଙ୍କର ପ୍ରତିଷ୍ଠାରେ ହସ୍ତକ୍ଷେପ କରିବା ଯେକୌଣସି ଲୋକ ପକ୍ଷରେ ଦୁରୂହ । ଏପରି ଦୁର୍ଦ୍ଦଶା ସେ କେବେ ଅନୁଭବ କରିନାହାନ୍ତି । କିନ୍ତୁ ପୁତ୍ରବଧୂ କ୍ଷମାର ଆଗମନ ଦିବସରୁ ସେ ନିଜ ପ୍ରତିଷ୍ଠାରେ କ୍ରମଶଃ ଗ୍ଳାନି ଅନୁଭବ କଲେ । ଘନଘନ ପ୍ରତିଷ୍ଠାସ୍ଥାନରେ ମଧ୍ୟ ସେ ଅପ୍ରତିଭ ହେବାକୁ ଲାଗିଲେ । ସୁତରାଂ ସେ ଦିନୁଁ ଦିନ ଚିନ୍ତାକୁଳ ଏବଂ ବିପର୍ଯ୍ୟସ୍ତ ହେଲେ । ବଶିଷ୍ଠଙ୍କର ବିଷାଦଗ୍ରସ୍ତ ମନରେ ବଧୂ ପ୍ରତି ଈର୍ଷ୍ୟା ସଂଜାତ ହେଲା । ବିଦ୍ୟାପ୍ରତିଯୋଗିତାରେ ବଧୂର ବିଜୟଲାଭ ତାଙ୍କର ହୃଦ୍‌ଶୂଳ ହେଲା ।

ପୁତ୍ର ଏବଂ ପୁତ୍ରବଧୂ ପିତୃଦେବଙ୍କର ଚିନ୍ତାକୁଳତା ବିଶେଷତଃ ବିପର୍ଯ୍ୟସ୍ତତା ଅନୁଭବ କରି ତାହାର ନିରାକରଣ ନିମନ୍ତେ କାରଣ ଜାଣିବାକୁ ତାହାଙ୍କ ନିକଟରେ ଜିଜ୍ଞାସୁ ହେଲେ । ଈର୍ଷ୍ୟାକଳୁଷିତହୃଦୟ ପ୍ରତିଷ୍ଠାଲୋଲୁପ ପିତା ବିବେକହୀନ ହୋଇ ପୁତ୍ରବଧୂର ପ୍ରତ୍ୟୁତ୍ପନ୍ନମତିତ୍ୱ ତାହାଙ୍କର ପ୍ରତିଷ୍ଠା ହାନିର କାରଣ ହେବାରୁ ସେ ସର୍ବତ୍ର ଅପ୍ରତିଭ ହେଉଅଛନ୍ତି, ସୁତରାଂ ଦିନକୁ ଦିନ ବିପର୍ଯ୍ୟସ୍ତ ହୋଇ ଗଭୀର ଦୁଃଖ ଅନୁଭବ କରୁଅଛନ୍ତି ବୋଲି ନିର୍ଦ୍ଦେଶ କଲେ । ଏଥିରେ ପିତୃଭକ୍ତ ପତିପତ୍ନୀ ଦୁହେଁ ଅତ୍ୟନ୍ତ ଦୁଃଖିତ ଏବଂ ଚିନ୍ତିତ ହେଲେ ଏବଂ ତହିଁର ପ୍ରତିକାର ନିମନ୍ତେ ଉପାୟ ଚିନ୍ତାକଲେ । କିନ୍ତୁ ପ୍ରତ୍ୟୁତ୍ପନ୍ନମତିତ୍ୱ ଈଶ୍ୱରପ୍ରଦତ୍ତ ଗୁଣ । ଏହାର ପରିହାର ମନୁଷ୍ୟ ପକ୍ଷରେ ଅସମ୍ଭବ । ରାଜସଭାରେ

# ଖନା

ନିବନ୍ଧାଦିରେ ମଧ୍ୟ ବହୁଜନାନୁମୋଦିତ । ସୁତରାଂ ସେଥିରେ ଖନାର ଅନୁପସ୍ଥିତି ଅବାଞ୍ଛନୀୟ । ଏକମାତ୍ର ଉପାୟ ଖନାର ଜିହ୍ୱାଚ୍ଛେଦନ । ତାହାହେଲେ ବାକ୍‌ଶକ୍ତିଶୂନ୍ୟରେ ଖନାର ନିରୁତ୍ତରତା ସମ୍ଭବ ହୋଇପାରେ । ନଚେତ୍ ପ୍ରଶ୍ନୋତ୍ତର ପ୍ରଦାନରେ ଖନାର ପ୍ରତିଦ୍ୱନ୍ଦ୍ୱିତାଭଙ୍ଗ ଅସମ୍ଭବ । ପୁତ୍ରପତ୍ନୀ ପିତାଙ୍କର ଅଗ୍ରଗାମିତ୍ୱକୁ ନିରୁପଦ୍ରବ କରିବାନିମନ୍ତେ ପ୍ରୋକ୍ତ ଉପାୟ ପିତାଙ୍କ ନିକଟରେ ଉପସ୍ଥାପିତ କରିବାରୁ ହୃତସ୍ୱାନ୍ତ ପିତା ନିର୍ବିକାର ହୃଦୟରେ ବଧୂର ଜିହ୍ୱାଚ୍ଛେଦ ନିମନ୍ତେ ଅନୁକୂଳ ମନ୍ତ୍ର ପ୍ରଦାନ କଲେ । ସାଧ୍ୱୀ ଖନା ଏଥିରେ ଇତସ୍ତତଃ ନହୋଇ ଶ୍ୱଶୁରଙ୍କର ସନ୍ତୋଷ ନିମନ୍ତେ ପ୍ରୋକ୍ତ ଦଣ୍ଡ ଗ୍ରହଣ କରିବାକୁ ପ୍ରସନ୍ନ ଚିତ୍ତରେ ସମ୍ମତି ଜ୍ଞାପନ କଲେ ଏବଂ କାର୍ଯ୍ୟତଃ ତାହାଙ୍କର ଜିହ୍ୱା ଛେଦିତ ହୋଇଥିଲା । ଜିହ୍ୱା ଛେଦିତ ହେବାରେ ତଦବଧି ସେ ଖନାନାମରେ ସର୍ବନ ପରିଚିତ ହେଲେ ଏବଂ ଶ୍ୱଶୁରଙ୍କର ପ୍ରତିଷ୍ଠା ଆମରଣ ଅମ୍ଳାନ ରହିଲା ।

ଈଦୃଶ ପ୍ରତିଷ୍ଠାଲାଳସା ଏବଂ ଏତାଦୃଶ ତ୍ୟାଗ ପୃଥିବୀରେ ବିରଳ । ଆଧୁନିକ ଯୁଗରେ ଏବଂବିଧ ଘଟଣା କାଳ୍ପନିକ ବୋଲି ବିବେଚିତ ହେଲେହେଁ ଦିନେ ଜଣେ ଭାରତୀୟ ରମଣୀ ଗୁରୁଭକ୍ତିର ନିଦର୍ଶନରୂପେ ଏହି ଅଦ୍ଭୁତ ତ୍ୟାଗ କରିପାରିଥିଲେ । ଏହା କାଳ୍ପନିକ ଉପନ୍ୟାସ ନୁହେଁ, ଏହା ଐତିହାସିକ ସତ୍ୟ । ଜ୍ୟୋତିଷପଣ୍ଡିତା ଖନାର ପରିଚୟ ଅଦ୍ୟାପି ତତ୍ପ୍ରଣୀତ ଜ୍ୟୋତିଗ୍ରନ୍ଥରୁ ପ୍ରତିପାଦିତ ହୁଏ । ଡାକଋଷିବଚନତୁଲ୍ୟ ବହୁ ଖନାବଚନ ଅଦ୍ୟାପି ସାଫଲ୍ୟପ୍ରଦର୍ଶନପୂର୍ବକ ଖନାର ଖ୍ୟାତି ପ୍ରତିପାଦନ କରୁଅଛି ।

**ସଂପୂର୍ଣ୍ଣ**



